# ପ୍ରୀତିନଦୀ ଉତ୍ତଳା

ଗୀତିକବିତା

## ଡ଼. ଅନ୍ତର୍ଯ୍ୟାମୀ ମିଶ୍ର


ପ୍ରୀତିନଦୀ ଉତ୍ତଳା

ଲେଖକ: ଡ଼. ଅନ୍ତର୍ଯ୍ୟାମୀ ମିଶ୍ର

ପ୍ରକାଶିକା: ଶ୍ରୀମତୀ ପ୍ରେମଲତା ମିଶ୍ର
ପି.ପି.୧୯, ପାଣ୍ଡବ ନଗର,
ଭୁବନେଶ୍ୱର-୭୫୧୦୧୮
ଫୋନ: ୨୪୩୧୦୧୭

ଅକ୍ଷରସଜ୍ଜା ଓ ମୁଦ୍ରଣ: ଆର୍ଟ ସେଣ୍ଟର, ଭୁବନେଶ୍ୱର-୧୮
ଫୋନ: ୨୩୧୧୩୩୬

ପ୍ରଚ୍ଛଦ ଶିଳ୍ପୀ: ଦୁର୍ଗାଚରଣ ପଣ୍ଡା

ପ୍ରଥମ ସଂସ୍କରଣ: ୨୦୦୬

ମୂଲ୍ୟ: ଟ.୭୦/- (ସତୁରୀ ଟଙ୍କା) ମାତ୍ର

*PREETINADI UTTALA*

Author: Dr. Antaryami Mishr

Publisher: Smt. Premalata Mishra
19, Pandav Nagar,
Bhubaneswar - 751018
Phone: 0674-231017

DTP & Printed by: Art Centre, BBSR-18
Phone:2311336

Cover Art by: Durga Charan Panda

First Edition: 2006

Price: Rs.70/- (Rupees Seventy) Only



# ଆଶୀର୍ବାଦ ଭିକ୍ଷା

ଶ୍ରୀ ଶ୍ରୀ ଠାକୁର ଅନୁକୂଳ ଚନ୍ଦ୍ରଙ୍କ

ସତ୍‌ସଙ୍ଗର

ପ୍ରଧାନ ଆଚାର୍ଯ୍ୟ ଦେବ

ପରମ ପୂଜ୍ୟପାଦ

ଶ୍ରୀ ଶ୍ରୀ ଦାଦାଙ୍କ

ଅଭୟ ଚରଣରେ ବିନମ୍ର ପ୍ରଣତି

**ଡ଼. ଅନ୍ତର୍ଯ୍ୟାମୀ ମିଶ୍ର**

ଗୀତିକବି




କାବ୍ୟ ନାୟିକା , ଯାହାର

ପ୍ରୋତ୍ସାହନ ମୋ କଲମକୁ

ବଳିଷ୍ଠ କରିଛି ସେଇ

'ପ୍ରେମଲତା' ଙ୍କ ହସ୍ତରେ

ଅର୍ପଣ କଲି

ମୋର ଏଇ

ଗୀତି ଉପହାର – 'ପ୍ରୀତିନଦୀ ଉଛଳା'

ଅନ୍ତର୍ଯ୍ୟାମୀ ମିଶ୍ର



## ନାନ୍ଦୀମୁଖ ‘ପ୍ରୀତିନଦୀ ଉତ୍ତଳା’ରେ
## ସଂଗୀତ ଓ ସାହିତ୍ୟର ମହାମିଳନ

*ଶ୍ରୀ ପ୍ରଫୁଲ୍ଲ କୁମାର କର*
ସଂଗୀତ ନିର୍ଦ୍ଦେଶକ

ମୋର ବନ୍ଧୁ ତଥା ଅନୁଜୋପମ ଓଡ଼ିଶାର ଖ୍ୟାତନାମା ଗୀତିକବି ଡ଼. ଅନ୍ତର୍ଯ୍ୟାମୀ ମିଶ୍ରଙ୍କ କର୍ତ୍ତୃକ ସଂକଳିତ ସ୍ୱରରଚିତ ଆଧୁନିକ ଗୀତିକବିତା ସଂକଳନ ‘ପ୍ରୀତିନଦୀ ଉତ୍ତଳା’ ର ପାଣ୍ଡୁଲିପିଟି ପାଠ କରିବାର ସୁଯୋଗ ପାଇ ଖୁସି ହେଲି। ଆମର ଏହି ଗୀତ ସଂଗୀତର ସାରସ୍ୱତ ସମ୍ପର୍କ ଦୀର୍ଘ ଦିନର। ୧୯୬୩-୬୪ ମସିହାରେ ରେଭେନ୍ସା କଲେଜର ଛାତ୍ର ଥିବା ବେଳେ ଆକାଶବାଣୀର ଗୀତିକାର ରୂପେ ସ୍ୱୀକୃତି ଲାଭ କରନ୍ତି ସେ। ଆରମ୍ଭ ହୁଏ ଗୀତ ରଚନା ସ୍ୱର ସଂଯୋଜନା ଓ ପ୍ରସାର।

ଅବଶ୍ୟ ସରକାରୀ ଚାକିରୀରେ ନିୟୋଜିତ ଥାଇ ମଝିରେ କିଛି ଦିନ ଦୂର ଦୂରାନ୍ତ ସ୍ଥାନରେ ଅବସ୍ଥାପିତ ହୋଇ ଥିବାରୁ ସମ୍ପର୍କ ସେ ରଖି ପାରୁନଥିଲେ। ତଥାପି ସଂଗୀତର ସ୍ରୋତସ୍ୱିନୀ ତାଙ୍କ ପାଇଁ ଚିରସ୍ରୋତା, ସଦା ଚଟଂଳା ଏବଂ ଉତ୍ତଳା। ଅନ୍ତର୍ଯ୍ୟାମୀ ବାବୁ ତାଙ୍କ ରଚନା ଗୁଡ଼ିକରେ ଏକ ଅନନ୍ୟ ବିଶେଷତ୍ୱ ପ୍ରଦର୍ଶନ କରିଛନ୍ତି। ରଚନା ଗୁଡ଼ିକରେ ଯେତିକି ରସମୟତା ସେତିକି ପାଠକୀୟ ବିଭବ ଭରି ରହିଛି। ଯେପରି ଛନ୍ଦମୟତା ସେହିପରି ସାହିତ୍ୟିକ ଶବ୍ଦ ବିନ୍ୟାସ। କାବ୍ୟ ପିପାସୁ ତଥା ସଂଗୀତ ପିପାସୁ ଉଭୟ ଶ୍ରେଣୀର ଗ୍ରାହକଙ୍କ ମନ ତଥା କର୍ଣ୍ଣକୁ ସନ୍ତୋଷଦାୟୀ ରଚନା ଗୁଡ଼ିକ।

ଗୀତି କବିତାର ପ୍ରତ୍ୟେକ ଅଂଗକୁ ସ୍ପର୍ଶ କରିଛି ଅନ୍ତର୍ଯ୍ୟାମୀ ମିଶ୍ରଙ୍କ ରଚନା। ଅବଶ୍ୟ ଉକ୍ତ ସଂକଳନଟି କେବଳ ଆଧୁନିକ ଗୀତିକବିତାରେ ପୁଷ୍ଟ। ଏହା ପୂର୍ବରୁ ତାଙ୍କର ଦୁଇଟି ସଂକଳନ ପ୍ରକାଶିତ। ଯଥା: ତ୍ରିଧାରା ଓ ଭକ୍ତିସୂତ୍ର। ସୌଭାଗ୍ୟର ବିଷୟ ଯେ ଉଭୟ ପୁସ୍ତକ ଓଡ଼ିଶା ସଂସ୍କୃତି ବିଭାଗ ଦ୍ୱାରା ମନୋନିତ ଏବଂ ରାଜା ରାମମୋହନ ରାୟ ପାଠାଗାର, କଲିକତାଙ୍କ କର୍ତ୍ତୃକ ଗୃହିତ ହୋଇ ସାହିତ୍ୟିକ କୃତିର ସମ୍ମାନ ଲାଭ କରିଛି। ଭାବ, ଭାଷା ଓ ଛନ୍ଦକୁ ଆଧାର କରି ରଚିତ ପ୍ରତିଟି କବିତା ଅତ୍ୟନ୍ତ ସାରଗର୍ଭକ ଓ ହୃଦୟଗ୍ରାହୀ। ଧ୍ୱନି ଓ ଛନ୍ଦକୁ ଆଶ୍ରୟ କରି କବିତାଗୁଡ଼ିକ ଶ୍ରୋତାର ହୃଦୟକୁ ସଂଚରିତ ହୁଏ। କବିଙ୍କ ଅନୁଭୂତି ସହ ଚିନ୍ତନ

ଓ ମନନର ଏକ ଅପୂର୍ବ ମିଳନ ଥିବା ଭଳି ମନେହୁଏ ତାଙ୍କର ଗୀତିକବିତା ଗୁଡ଼ିକରେ। ଶବ୍ଦ ଓ ପଂକ୍ତି ଭିତରେ ସଂଗୀତ ସବୁକଥା କୁହେନା। କେଉଁଠି କେବଳ ଇସାରା, ଇଂଗିତ ତଥା ଲଘୁ ଚିତ୍ରକଳ୍ପ ମାଧ୍ୟମରେ କବି ମନକଥା କହିଛନ୍ତି, ଯାହା ଉଦ୍ଭିଦ୍ୟମାନ ସ୍ୱର ବା ଧ୍ୱନି ମାଧ୍ୟମରେ ଶ୍ରୋତାର ମାନସରେ ପ୍ରବେଶ କରିପାରେ। ଏହାହିଁ ତ ଗୀତି କବିତାର ବଶେଷତ୍ୱ। ସ୍ୱର ମାଧ୍ୟମରେ ଗୀତିକବିଙ୍କ ରଚନାର ମର୍ମ ଲୋକରୁ ଲୋକତର ଇଲାକାରେ ପ୍ରବେଶ କରିଛି। ପ୍ରତ୍ୟେକ ଗୀତିକବିତାରେ ଭାବର ସୁକୋମଳ ବୀଜଟି ଭାଷାର ମୃତ୍ତିକା ତଳେ ଗର୍ଭିତ ହୋଇ ପ୍ରକାଶୋନ୍ମୁଖ ଅବସ୍ଥାରେ ଥିବା ଅନୁଭୂତ ହୁଏ।

ଏହା କହିବା ବାହୁଲ୍ୟ ଯେ, ପ୍ରକାଶିତ ଅଧିକାଂଶ ଲେଖା ଉପରୋକ୍ତ ଦୃଷ୍ଟି କୋଣରୁ ଉଚ୍ଚାଙ୍ଗ ରଚନା। ଚୁନା ଚୁନା ଫୁଲ ପାଖୁଡ଼ା ପରି ଭାବ,ଛନ୍ଦ,ଭାଷା ଓ ଧ୍ୱନିର ହାଲ୍‌କା ରୂପକଳ୍ପ ଗୁଡ଼ିକ ତାଙ୍କର ଗୀତଗୁଡ଼ିକୁ ଉଭୟ ଗେୟ ତଥା ପାଠକୀୟ କବିତାର ମର୍ଯ୍ୟାଦାରେ ଭୂଷିତ କରିଛି। ଗୀତ ଗୁଡ଼ିକରେ ସୁଚିନ୍ତିତ ସ୍ଥାୟି ବା ଘୋଷାପଦ, ସୁନିୟନ୍ତିତ ଅନ୍ତରା ବା ମଧ୍ୟପଦ ଏବଂ ସୁସମାହିତ ନ୍ୟାସ ବା ଶେଷ ପଦର ଏକ ହୃଦୟଗ୍ରାହୀ ବିନ୍ୟାସ ପରିଲକ୍ଷିତ ହୁଏ। ଉପର୍ଯ୍ୟୁକ୍ତ ଗୀତିକବିତା ଗୁଡ଼ିକରେ ଯେ, କେବଳ ପ୍ରେମ, ବିରହ, ମିଳନ, ସମର୍ପଣ ତଥା ପ୍ରେମୀ ପ୍ରାଣର ନୀରବ ଆକୁତିର ସ୍ୱର ମୁର୍ଚ୍ଛିତ ହେଉଛି ତାହା ନୁହେଁ। ଗୀତର ଅନ୍ତଃସ୍ରୋତରେ ପ୍ରତିଫଳିତ ହେଉଛି ଏକ ନିର୍ଦ୍ଦିଷ୍ଟ ଜୀବନ ଦର୍ଶନ ପ୍ରତିକ୍ଷଣେ। ଏହାର ନିଛକ ଉଦାହରଣ-

୧. ଜୀବନଟା କିଛି ସ୍ମୃତିର ଆଲୋକ ଧାରା

୨. ମୃତ୍ୟୁ ତୁମେ, ଜୀବନ ସେପାରେ ଆତ୍ମାର ଆହୂତି 'ସ୍ୱାହା'।

ପରିଶେଷରେ 'କବି କଲମରୁ' ପୃଷ୍ଠାଟି ପଢ଼ି ବିମୋହିତ ହେଲି। କବି ଏଥିରେ କବି ଜୀବନର ଏକ ନିର୍ଭୀକ ତଥା ନିର୍ମମ ବ୍ୟବେଚ୍ଛେଦ କରି ଶେଷରେ ଦୀର୍ଘ ଶ୍ୱାସ ସହ ସମାପ୍ତ କରିଛନ୍ତି - "କବି ଏକ ସ୍ମୃତିର ମଣିଷ"।

ପ୍ରଫୁଲ୍ଲ କର

ସତ୍ୟନଗର, ଭୁବନେଶ୍ୱର

## କବି କଲମରୁ.........

କବି ତ ସ୍ଥବିର ନୁହେଁ
ବିହି ତା'ର ଲେଖିନି ବୟସ
ତା ଜୀବନ ସୀମାହୀନ ଅନନ୍ତ ଗଗନ
ଦିଗନ୍ତ ବି ନୁହେଁ ତା'ର ଶେଷ। ॥୦॥

ତା ଲେଖନୀ ସ୍ରୋତସ୍ୱିନୀ ଧାରା
ଯା' ସାଥେ ହୋଇଛି ତା'ର ଶୁଭ ପରିଣୟ
ସାଗରେ ମିଳନ ତା'ର ଶୁଦ୍ଧ ଅଭିଳାଷ ପରା
ପ୍ରଜ୍ଞା ତା'ର ଶେଷ ପରିଚୟ
ପାଦ ତା'ର ନ ହୁଏ ଅବଶ। ॥୧॥

ତା' ଜୀବନ ଅବୁଝା ସଂଗୀତଟିଏ
ଯାହାକୁ ସେ ଲେଖୁଥାଏ ଲୁହ ଲହୁ ଦେଇ
ବିଶ୍ୱ ପାଶେ ନିଃସ୍ୱ ସେ ହାୟ !
ପ୍ରୀତି ତା'ର ପାଦବଂଧା ଅଶ୍ୱର ଛାଇ
ବେଦନା ତା ଜୀବନ ସର୍ବସ୍ୱ। ॥୨॥

ନାହିଁ ତା'ର କୁଳମାନ ଭୟ
କବି ନୁହେଁ ବିଶ୍ୱ ପାଶେ ଦିବ୍ୟ ସୁପୁରୁଷ
ହଜିଯାଏ ତା'ର ପରିଚୟ ହାୟ !
ଅଯାଚିତେ ପିଏ ନିତି ବିସ୍ମୃତିର ବିଷ
କବି ଏକ ସ୍ମୃତିର ମଣିଷ। ॥୩॥



# ସୂଚୀପତ୍ର

## ଏ ତୀର

## ସେ ତୀର

## ମୁଁ ଏକ ପୀୟୂଷ ବିନ୍ଦୁ.......

ଭାସି ଭାସି ଯାଏ ଭରା ତଟିନୀରେ
ଭେଟିବାକୁ ମହାସିନ୍ଧୁ । ॥୦॥

ଏ ଭବ ତଟିନୀ ଉତ୍ତାଳ ତରଂଗ
ତରଂଗ ନୁହେଁ ସେ ମିଛ ଅନୁରାଗ
କୂଳୁ କୂଳୁ ତାନ ତା'ଭବ ବନ୍ଧନ
କାଟି ସେ ବଂଧନ ସ୍ରୋତେ ହେବି ଲୀନ
ଯିବି ବହୁ ଦୂରେ ବଂଧୁ
ଭେଟିବାକୁ ମହାସିନ୍ଧୁ । ॥୧॥

ବେନି ପାଶେ ମେଲି ତା' ବେନି କିନାରା
ଆଲିଂଗନେ ମତେ କର ଆତ୍ମହରା
ଛାଡ଼ିଦିଅ ପଥ ହେ ନଦୀ ନାୟିକା
ତେଜି ତୁମ ସଂଗ ଯିବି ଏକାଏକା
ଏ ଜଗତ ପଛେ ନିଂଦୁ
ଭେଟିବି ମୁଁ ମହାସିନ୍ଧୁ । ॥୨॥



*ମତେ ସବୁଠୁଁ ସୁନ୍ଦର ଲାଗେ*

*ସାଗର ଲହରି......*

ତା' ପରଶେ ତନୁମନ ଉଠେ ମୋ ସିହରି

ହେଲେ, ତୁମ କଥା କୁହ ସାଥି କହିବି କିପରି ? ||୦||

ତୁମଠୁଁ ସୁନ୍ଦର ଲାଗେ

ତୁମ ନୀରବତା

ଆଡ଼କରା ଆଖିତଳେ

ତୁମ ଚପଳତା

ଅଲିଅଳି ମନତୁମ ଅବୁଝା କବିତା

ସେ ମନର ଗଭୀରତା ମାପିବି କିପରି ? ||୧||

ମୁଁ ଯେ ବେଳା ସଇକତ

ତୁମେ ନୀଳ ବୀଚି

ମୋ ମନର ଏ ଶିକତା

ଦେଲ ତୁମେ ଯାଚି

ବିଜନ ଏ ବେଳା ବୁକେ କଂପନ ରଚି

କୁହ ସାଥି ନୀରବରେ ରହିଛ କିପରି ? ||୨||



*ଆହା ଏ ମନକୁ......*

ଏ ମନକୁ ବିକି ଦେଲି କୁଆଁରୀ ଜହ୍ନକୁ । ||୦||

ସେ କହିଲା ଏ ମନଟା ହୋଇଛି ପୁରୁଣା
କେତେ ରୂପ ପସରାରେ ହୋଇ ବିକାକିଣା
ଏବେ ପୁଣି ବିକୁଅଛ ଏକରୁ ଆନକୁ
ତୁମ ପୁରୁଣା ମନକୁ । ||୧||

ଏ ମନକୁ ବିକି ଦେଲି ଫୁଟା ସେଫାଳିରେ
ଝୁଲାଇଲା ନେଇ ତା'ର ବାସର ଦୋଳିରେ
ସୁବାସରେ ଭରିଦେଲା ଅଲୋଡ଼ା ମନକୁ
ସେଇ ପୁରୁଣା ମନକୁ । ||୨||

ଏ ମନକୁ ବିକିଦେଲି ଆମ୍ବ ବଉଳରେ
ବଉଳ ଯେ ଖେଳେ ଦୋଳି ମଳୟ କୋଳରେ
ମୋ ମନକୁ ଦେଇ ଦେଲା ବୁଲା ପବନକୁ
ମୋର ପୁରୁଣା ମନକୁ । ||୩||

*ଜୀବନରେ ଯାହା କିଛି ପାଇବାକୁ ଥିଲାବାକି*

କୁହ କିଆଁ ତୁମେ ମତେ ଅଯାଚିତେ ଦେଲ ଡ଼ାକି । ॥୦॥

ନିରାଶାର ଅଂଧାରେ ହଜିଥିଲା ମୋର ରାହା

ମମତାର ଆଲୋକରେ ସଜାଇଲ କୁହ କିଆଁ

ଦିଗହଜା ପଥିକକୁ ପଥେ କିଆଁ ନେଲ ଡ଼ାକି । ॥୧॥

ନୀଡ଼ହରା ପକ୍ଷୀ ମୁଁ ଯେ ସୀମାହୀନ ଆକାଶରେ

ଉଡ଼ିଉଡ଼ି ଯାଉଥିଲି ଆକାଶର ସୀମାପାରେ

ଆକାଶର ରାଣ ଦେଇ କହ କିଆଁ ଦେଲ ଡ଼ାକି ।॥୨॥



## ସଜଫୁଲ

### (ନାୟକ)

*ଅଙ୍କାବଙ୍କା ବଣରାହା ଫୁଲର ଗାଁକୁ*

ପଥେ ପଥେ କେତେ ବଣନଈ

ଚାଲିଲେ ସରେନା ବାଟ, ଧାଇଁଲେ ଫୁଟଇ କଣ୍ଟା

ଏତେ ବଙ୍କା ଏ ବାଟ କି ପାଇଁ ? ||୦||

ଯୁଆରୀ ପାହାଡ଼ି ନଈ ଫୁଲୁ ତୁ କାହିଁକି

ବାଟରେ ତ ବାଘମାମୁଁ ଘର

ଖଂଜ ପାଦେ ଚାଲୁଚାଲୁ କାଳେ ସଂଜ ବୁଡ଼ିଯିବ

ମନେ ମନେ ଲାଗେ ଭାରି ଡ଼ର

ଆଉ ବି ଡ଼ର ଲାଗଇ ଫୁଲ କି ପଡ଼ିବ ଶୋଇ

ମୋ ଆସିବା ବାଟ ଚାହିଁ ଚାହିଁ । ||୧||

ମହୁଆ ଏ ବନ ପଥେ ମହୁଲି ପବନ ବହେ

ମୋର ବି ତ ମହୁମାଛି ମନ

ପାହାଡ଼ି ଏ ନଈ ପରି ବନପଥେ ଘୁରିଘୁରି

ମନ ଖୋଜେ ଆଉ ଏକ ମନ

ବାଟ ତ ସରେନା ମୋର କେତେ ଦୂର ଗାଁ ତା'ର

ଅସରନ୍ତି ଏ ବାଟ କି ପାଇଁ ? ||୨||



# ସଜଫୁଲ

## (ନାୟିକା)

ହେ ପଥିକ, ପଡ଼ନାହିଁ ଥକି
ଚାଲିବାର ମାନେ ପରା ଜୀବନ
ମହୁମାଛି ପଡ଼ନାହିଁ ଶୋଇ
ଶୋଇଲେ ତ ଭୁଲିଯିବ ସପନ । ॥୦॥

ଏ ଦୁନିଆ ରାହା ଅଙ୍କାବଙ୍କା
ତେଣୁ ପଥ ଏମିତି ସରେନା
ପଥେ ଯଦି ନ ଲାଗଇ ଶଂକା
ଚାଲିବାର ମାନେ କିଛି ହୁଏନା
ଯିଏ ବା ପାଦରେ ମାପୁ ଜୀବନ ପଥକୁ
ଆମ ପାଇଁ ଏହା ଲକ୍ଷେ ଯୋଜନ । ॥୧॥

ମିଳନର ଆଶା ନେଇ ଧାଇଁଛି ସରାଗେ
ଛଳଛଳ ପାହାଡ଼ି ଝରଣା
ନିରାଶା ଦିଅଗୋ ପୋଛି ମତୁଆଲା ମହୁମାଛି
ଝରଣାର ଗୀତ କି ବୁଝନା ?
ଦୁନିଆରେ ବଂଚିବାର ଦୁଇଟି ପାଥେୟ
ଏକ 'ଆଶା' ଆଉ ଏକ 'ସପନ' । ॥୨॥



## ସଜଫୁଲ
### (ଯୁଗ୍ମସ୍ୱର)

ନାୟକ: ଏ ବନ ସେ ବନ ପରି ଆଉ ଏକ ବନ ଅଛି....
ଯେ ବନର ନାମ ହେଲା 'ଜୀବନ'
ନାୟିକା: ତୋ ମନ ମୋ ମନ ପରି ଆଉ ଏକ ମନ ଅଛି
ସରମୀ ଲତାରେ ଫୁଟା 'ସୁମନ'। ||୦||

ନାୟକ: ଗହନ ସେ ବନ ତଳେ ଉଝଟ ଝରଣା ପ୍ରାୟେ
ପତ୍ରର ମର୍ମର ସୁରେ କୁହ କିଏ ଗୀତ ଗାଏ
ନାୟିକା: ସେତ ଆମ ଛଳଛଳ ଯୌବନ। ||୧||

ନାୟିକା: ଗୋପନ ସେ ମନ ତଳେ ଅଝଟ ଅବୁଝା ସୁରେ
କୁହ କିଏ ଗୀତ ଗାଇ ତନୁରେ ବେପଥୁ ଭରେ
ନାୟକ: ସେତ, ଫୁଲ ପାଶେ ମହୁମାଛି ଗୁଂଜନ। ||୨||

ଯୁଗଳ: ଫୁଲ ପାଇଁ ମହୁମାଛି ଜୀବନର ସବୁକିଛି
ଅଭୁଲା ତା'ର ସ୍ପନ୍ଦନ......
ତା'ର ଦଂଶନ.....
ତା'ର ଚୁମ୍ବନ......। ||୩||



# ଅସତ୍ୟ ସହର

ଏମିତିକା ଏକ ସହରରେ ଆଜି
ସତେ ମୁଁ କରୁଛି ବାସ
ଫୁଟିଛି ଅନେକ ଫୁଲ ଉପବନେ
ହେଲେ ଟିକିଏ ନାହିଁ ସୁବାସ । ॥୦॥

ରାତିର ଅନ୍ଧାରେ ପକ୍ଷୀ
ଏ ଡ଼ାଳୁ ସେ ଡ଼ାଳ ଉଡ଼େ
ଦିନର ଆଲୁଏ ନିତି
ମଣିଷ ଯେ ପଥ ହୁଡ଼େ
ଏଇ ସହରର ରାଜପଥେ
ଅରାଜକତାର ଶେଷ । ॥୧॥

ଗୋଲାପର ଡ଼ାଳେ ଡ଼ାଳେ
ଖାଲି କଣ୍ଟକର ଭୟ
ଫୁଲ ମାଗେ ଏଠି ନିତି
ମଧୁପର ପରିଚୟ
(ଏଇ) ଅସତ୍ୟ ସହର ସାରା
(ଖାଲି) ଅଭିନୟ ଉପହାସ । ॥୨॥



## ସ୍ମୃତି

ରାତିର ପ୍ରଦୀପ ସବୁ ଲିଭିଗଲା ପରେ
ତାରାମାନେ ଶୋଇଗଲେ ଗହନ ନିଦରେ
କୁହୁକ ଅଞ୍ଜନ ମାଖି
ମମତାର ଶିଖା ଟେକି
ଜଳି ଉଠେ ଯେ ପ୍ରଦୀପ ନିତି,
ନାଁ ତା'ର 'ସ୍ମୃତି' । ॥୦॥

ସେ ଆଲୋକ ସେଇ ଶିଖା ତା'ର
ସତେ ମୋର କେତେ ଆପଣାର
ଦୂରେ ଚାଲି ଗଲା ପରେ ସତେ
ଘଟିଛି କି ତା'ର ରୂପାନ୍ତର
ସ୍ମୃତି ଏକ ଗଭୀର ସାଗର
ବୁକେ ତା'ର ଭରା ହୀରା ମୋତି । ॥୧॥

ଭୀରୁ ଏଇ ମନ କାହିଁ ଆଜି
ଅନ୍ଧାରେ ପାଏ ତାକୁ ଖୋଜି
ଏ ଆଖିର ବରଷାରେ ଭିଜି
ମନଶିଶୁ ଯାଏ କାହିଁ ହଜି
ସ୍ମୃତି ମୋର ଦରଦୀ ମନର
ଦରବୁଝା ଅଧାଲେଖା ଗୀତି । ॥୨॥



*ଏ ମୋର ଆଖିର ନଈ, ଯାଉଛି ବହି*

ଉଛୁଳା ହୋଇ କାହିଁକି ?

ଏ ମୋର ମନର ଯୁଇ, ଜଳଇ ନିତି

ଉତୁଲା ହୋଇ କାହିଁକି ? ||୦||

ତୁମେ ଗୋ ଫଗୁଣ ହୋଇ ପରସି ଗଲ

ତୁମେ ବି ଶ୍ରାବଣ ହୋଇ ବରଷି ଗଲ

ତୁମେ ତ ଯାହା ଦେଲ, ସବୁ ତ ଲୁଟି ନେଲ

ମନର ପ୍ରାଚୀର ଡେ଼ଇଁ ମଳୟ ହୋଇ

ଆସ ଗୋ ବହି କାହିଁକି ? ||୧||

ମତେ ତ କୁହ ତୁମେ ଛଳନାମୟୀ

ମୁଁ ଅବା ପାରିଛି କେବେ ତୁମକୁ ଛୁଇଁ

ତୁମେ ତ ଯାହା ଦେଲ, ସବୁ ତ ଲୁଟି ନେଲ

ରାତିର ତୀମିର ଚିରି ସପନ ଭରି

ଆସ ଗୋ ନିତି କାହିଁକି ? ||୨||



ଫୁଲର ସବାରି ଆଗେ ଆଗେ ଯେବେ

ବାଜୁଥିଲା ସାହାନାଇ

ଆମ ଗାଁ ମୁଣ୍ଡ ଝଂକା ବରଗଛ-

ତଳେ ମୁଁ ରହିଛି ରହିଁ । ॥୦॥

ବାହକର ରଡ଼ି ଡାହୁକ ଶବଦ ପରି

ଆର ଗାଁ ମୁଣ୍ଡେ ଥମି ଥମି ଗଲା ସରି

ଏ ଗାଁ ର ଝିଅ ସେ ଗାଁ ରେ ହେଲା ବୋହୂ

ଏ ଦେହ ରକତ ସେ ଦେହର ହେଲା ଲହୁ

ତମେତ ରହିଲ ସଉଦାଗରର ପୁରେ

ନାଲି ଗୁଲୁଗୁଲୁ ସାଧବର ବୋହୂ ହୋଇ । ॥୧॥

ଏ ଗାଁ ର ଫୁଲ ସେ ଗାଁ ରେ ହେଲା ବାସି

ଆମ୍ବ ବଉଳରେ ଧରିଲାଣି ଆମ୍ବ କସି

ବର ଓହଳ ତ ଭୁଇଁରେ ଲୋଟିଛି

ମାଟିରେ ଲୋଟି ସେ ଖୁଣ୍ଟ ପାଲଟିଛି

ତଥାପି ଜୀଇଁଛି ଏ ଗାଁ ର ମହୁମାଛି

ମଉଳା ଫୁଲର ସ୍ମୃତି ମହୁ ପିଇ ପିଇ । ॥୨॥



## ଅପରାହ୍ନ

*ଜୀବନ ତରୁ ମୋ ଦେଲାଣି ପତ୍ରଝଡ଼ା*

ଶାଖାରେ ତ, ଆଉ ଫୁଟେନା କୃଷ୍ଣଚୂଡ଼ା

ତଥାପି ମୋ ପ୍ରିୟା ନିମିଷେ ହୋଇଲେ ଦୂର

କୁହ କିଆଁ ମୋର ପ୍ରାଣ କରେ ହାହାକାର। ॥୦॥

ମନ ଅଇନାରୁ ପାରଦ ଗଲାଣି ଖସି

ପୁନିଅଁ ଚାନ୍ଦକୁ ଛୁଇଁଛି ଉଆଁସ ମସୀ

ତଥାପି ତାରକା ବଉଦେ ଢ଼ାଙ୍କିଲେ ମୁହଁ

କୁହ କିଆଁ ମୋର ପ୍ରାଣ କରେ ହାହାକାର ? ॥୧॥

ମାଟି ପ୍ରଦୀପରୁ ତଇଳ ଗଲାଣି ସରି

ଆଲୋକର ଧାରା ଆଉତ ପଡୁନି ଝରି

ଥରଥର ହେଲେ ନିଷ୍ପ୍ରଭ ଶିଖା ତା'ର

କୁହ କିଆଁ ମୋର ପ୍ରାଣ କରେ ହାହାକାର ? ॥୨॥



## ସଜଫୁଲ 'ମଧୁମାସ'
## (ନାୟିକା)

*ଫଗୁଣ ତୋ ଗୁଣ ବାହୁନି ବାହୁନି*
କୋଇଲି ଲେଖୁଚି ଚିଠି
ଆମ୍ବ ବଉଳର ଗହଳ ଶାଖାରେ
ସୁମରି ସେ ମଧୁ ପ୍ରୀତି । ॥୦॥

ଏ ବରଷା କାଳ ହୋଇଛି ମୋ କାଳ
ନୁହେଁ ମୁଁ କେକୀ ମିଥୁନ
ଅୟସୀ ମନର ବୟସୀ ସୁରେ ମୋ
ଜାଗେନା ପଞ୍ଚମ ତାନ
ଆଜି ବିରହିଣୀ ଗୀତି ସୋହାଗିନୀ
ଫଗୁଣର ମଧୁମତୀ । ॥୧॥

ନିଦାଘ, ବରଷା, ଶରତ, ଶିଶିର
ଋତୁ ଆସେ ଋତୁ ଯାଏ
ହେଲେ ମଧୁମାସ ତୋହରି ପରଶ
ପରାଣେ ଯେ ଦାଗ ଦିଏ ।
କୁହ ଗୋ ଫଗୁଣ କେହି କି ଭୁଲିଚି
ମିଳନର ମଧୁରାତି ? ॥୨॥



(ନାୟକ)

ଦୂରେ ବହୁ ଦୂରେ ବସି
ଝୁରେ ମୁଁ ମିଳନ କଥା
ଉଦାସୀ ମୁଁ ମଧୁମାସ
ପରାଣେ ବିରହ ବ୍ୟଥା । ॥୦॥

ଭୁଲିନି ମୁଁ ତା'ର ଶେଷ ଅଭିସାର
ମଳୟେ ମହୁଲି ସ୍ୱନ
ମାନସୀ ମୋ ପ୍ରିୟା ବୁଝେ ଦିଆ ନିଆ
ବୁକୁର ମଧୁ ଦହନ
ମୋ ମନର ତାତି ବଢ଼ାଇ ଦେଇଛି
କୋଇଲିର ନୀରବତା । ॥୧॥

ବିଜୁଳି ଲିପିରେ ଚିଠି ମୁଁ ଲେଖୁଚି
ଆକାଶର ପରଦାରେ
ଲୁହର ନଈରେ ଭସାଇ ଦେଉଛି
ସାକ୍ଷୀ ରଖି ବାରିଦରେ
ବରଷା ପାଣିରେ ଲିଭି କି ପାରିବ
ମନର ଦହନ ଚିତା ?



(ଯୁଗ୍ମସ୍ୱର)

ମଧୁମାସ: କୋକିଳର ମୁଖେ କୁହୁ (କୁହୁ....କୁହୁ)

କୋକିଳ: ମଧୁମିତା ବୁକେ ମହୁ (ମହୁ....ମହୁ)

ମଧୁମାସ: ଧରାରେ ଆସିଛି ମଧୁର ମୁଁ ମଧୁମାସ

କୋକିଳ: କୋକିଳ ମୁଁ ଡ଼ାକେ ଆସ ଆସ

ପ୍ରିୟ ମୋର ମଧୁମାସ

ଘୋଷା: କୋକିଳର ମୁଖେ କୁହୁ କୁହୁ। ||୦||

ମଧୁମାସ: ମଳୟ ଲାଗିଛି ଫଗୁଣର ଫୁଲେ ଫୁଲେ

କଅଁଳ କଳିକା ଆଖିର ଝରକା ମେଲେ

ଗାଇଦେ କୋକିଳ ତୁ.....

କୁହୁ...କୁହୁ...କୁହୁ...କୁହୁ। ||୧||

କୋକିଳ: ସୁରେ ମୋ ଜାଗିଛି ପଞ୍ଚମ ମଧୁ ତାନ

ଜାଗିଛି ବକୁଳ ଜାଗିଛି ଆମ୍ର ବିତାନ

ଗାଉଛି ଆକୁଳେ ମୁଁ....

କୁହୁ...କୁହୁ...କୁହୁ...କୁହୁ... ||୨||



## *ଏ ବରଷା ରାତି କେମିତି ଅତିଥି ଆସିଲ*

ମନ ଝରକାରେ (ମୋର) ମହକି ଉଠିଲା ବକୁଳ । ॥୦॥

ଘୋର ବରଷାରେ ରାତିର ପଣତ ଭିଜିଗଲା
ଘନ କବରୀରୁ ତାରକାର ଫୁଲ ହଜିଗଲା
କୁସୁମେ କବରୀ ଭରିଦେବା ପାଇଁ
ନିଶି ଅନ୍ଧାରେ ଆସିଲ କି ଧାଇଁ
ହାତେ ଧରି ପ୍ରୀତି ମୁକୁଳ । ॥୧॥

ଅନ୍ଧ ତୀମିର ଭୀରୁ ପ୍ରଦୀପର ଶିଖା ଛୁଇଁ
ଯଲ୍‌ସା ଶେଷର ନୀରବତା ମାଗେ କାହାପାଇଁ
ରିକ୍ତ ମନ ମୋ ପରଶ-କାତର
ଶିକ୍ତ ଅଧର ଲାଜେ ଥରଥର
ମୋର, ମନ ତଳେ ଡ଼ାକେ କୋକିଳ । ॥୨॥



## (କୁଆଁରୀଆ ନଦୀ ତୀରେ)

**ଆଗୋ ନଦୀ ତୁମ କୁଆଁରୀ ଆଖିରେ**
ଅସ୍ତରାଗର ପ୍ରୀତି
କଳ କଲ୍ଲୋଳିନୀ ଗୀତି ସୋହାଗିନୀ
ତୁମେ ସପନର ମଧୁମତୀ । ||୦||
ଶାନ୍ତ ସୁନ୍ଦର ତୁମ ନୀରବତା
କଂପନ ଆଣେ ମନେ
କୁଳୁଗାମିନୀ ଗୋ ପାଦର ନୂପୁର
ବେପଥୁ ଜଗାଏ ପ୍ରାଣେ
ସୂରୁଜର ନାଲିବୋଳା ସେ ଅଧର
ପରଶ ମଧୁର ଅତି । ||୧||
ନୀଳ ନୀର ତୁମ ବୁକୁର ମୁକୁର
ନିରେଖେ ଆନନ ଇନ୍ଦୁ
ନୀଳ ସେ ଆକାଶ ନୀଳ ସେ ବନାନୀ
ତୁମେ କି ନୀଳିମା ବଧୂ
କାକଳୀ-ନିବିଡ-ବକ୍ଷେ ତୋ ନୀଡ଼
ରଚଇ ବିହଙ୍ଗ ସାଥୀ । ||୨||
ମଥାରେ ତୁମର ସୂରୁଜର ଟୀକା
ପଣତେ ମୁରୁଜ ଦେଇ
ପାଦରେ ନୂପୁର ଅଧରେ ବଧୂଳି
(ତୁମେ) ଅବଗୁଣ୍ଠନମୟୀ
ତଥାପି ତୁମେ ତ ରହିଛ କୁଆଁରୀ ହାୟ !
ସତେ, ଆସିନି ମିଳନ ରାତି । ||୩||



(ଯୁଗ୍ମସ୍ୱର)

ନାୟକ: ତୁମେ ଏକା ମୁଁ ଏକା ଏକୁଟିଆ ଜହ୍ନ
ଝିଲିମିଲି ଫୁଲପକା ରାତି
ନାୟିକା: ଆମେ ଦୁଇ ଦୁଇ ଆମ ଦରଫୁଟା ମନ
(ଆମେ) ମଧୁଝରା ସପନର ସାଥି । ||୦||

ନାୟିକା: ଫଗୁବୋଳା ଫଗୁଣ ଯେ ଫୁଲରେ ପରଶି ଯାଏ
ଗୁଣୁ ଗୁଣୁ ଗୁଂଜନେ ମଧୁପ କି ଗୀତ ଗାଏ
ସାନି ସାରେ ନିରେ ନିସା....
ନିସା ନିରେ ଗାରେ ସା....
ନାୟକ: ଅକୁହା ପୀରତି ଭାଷା
ଗାଏ ସେ ମିଳନ ଗୀତି । ||୧||

ନାୟକ: ଫଗୁଣର ଫୁଲବନେ ବଧୂଲି ଫୁଲର ମେଳା
ସଜାଇଛି ଫୁଲବଧୂ ରୂପସୀ ରୂପ ପସରା
ସାନି ସାରେ ନିରେ ନିସା....
ନିସା ନିରେ ଗାରେ ସା....
ନାୟିକା: ହସି କୋଳେ ଯାଏ ଲୋଟି
ମଧୁପର ମଧୁମତୀ । ||୨||



(ପ୍ରଥମ ପ୍ରେମ)

## ତୁମ ପ୍ରଥମ ପ୍ରେମର ଅନୁଭୂତି

କିଛି ମନେ ଅଛି, କିଛି ଭୁଲିଗଲି
ପ୍ରଥମ ପ୍ରେମର ଚିଠି ଯେତେ
ସବୁ ସମୟ ନିଆଁରେ ଗଲାଜଳି। ॥୦॥

ମୋର ସଜଳ ଆଖିର ନିଦ ଯେତେ
ତୁମ ସପନର ହାତେ ବଂଧା ଦେଲି
ସେଇ ଅଭୁଲା ଦିନର କଥା କେତେ
ଆଉ ପ୍ରୀତିର ଗୋଲାପ ନାଲି ନାଲି
ତୁମ ସଲଜ ଆଖିର ଇଂଗିତେ
କେତେ ପ୍ରୀତିର ମଦିରା ଦେଲ ଢ଼ାଳି। ॥୧॥

ମୁଁ ଯେ, ଗତାୟୁ ଦିନର ଦିଗନ୍ତେ
ତୁମ ଭଲପାଇବାର ଆରୁଣିମା
ଆଜି ଖୋଜୁଛି ସାଗର ସଇକତେ
ତୁମ ଅଲକତ ପାଦ ମୃଦୁ ଚୁମା
ମୋର ଜୀବନ ଯଜ୍ଞ ପୂଜା ଶେଷେ
ବାରେ, ପ୍ରେମର ଆହୂତି ଦିଅ ଢ଼ାଳି। ॥୨॥



(ଯୁଗଳସ୍ୱର)

ନାୟକ: *ରାତି ଦରିଆର ସପନ ବୋଇତେ*
ପ୍ରୀତିର ସଉଦା ଧରି
କିଏ ଗୋ ରୂପସୀ ଆସୁଛ ମୋ ପାଶେ
ଏ ଦରିଆ ହୋଇ ପାରି
ନାୟିକା: ମୁଁ ଏକ ସରଗ ପରୀ । ॥୦॥

ନାୟକ: ଦରିଆର ଢେଉ ଭସାଏ ବୋଇତ
ଉଛୁଳେ ଦରିଆ ପାଣି
ସତେ କି ଗୋ ତୁମେ ଅରପି ଦେଇଛ
ସବୁକିଛି ଜାଣିଜାଣି
ନାୟିକା: ଦରଭିଜା ମୋର ପ୍ରୀତିର ସଉଦା
ବୋଇତ ହେଲାଣି ଭାରି
ମୁଁ ତୁମ ସରଗ ପରୀ । ॥୧॥

ନାୟକ: ଉଛୁଳା ଦରିଆ ପୂବେଇ ବତାସ
ଭିଜାଏ ତୁମର ଦେହ
ତଥାପି ତ ତୁମେ ସାଇତି ରଖିଚ
ପଣତରେ ଭରା ସ୍ନେହ
ନାୟିକା: ସେ ସେନେହ କେବେ ଭସାଇ ଦେବିନି
ପଣତ ଗଲେ ବି ଚିରି । ॥୨॥
ମୁଁ ତୁମ ସରଗ ସପନ ପରୀ । ॥୨॥



(ଯଉବନ)

ନାୟକ: *ଯଉବନ ଏକ ଜଉର ମହଲ*
ପ୍ରଣୟ ତା ବୁକେ ନିଆଁ
ଯତନେ ସାଇତା ସପନ-ମାଟିରେ
କୁହୁକ ଜଗାଏ ପ୍ରିୟା
ଲାରାଲା, ଲାରାଲା, ଲାରାଲୁ
ଲାରାଲା, ଲାରାଲୁ ଲାରାଲା । ॥୦॥

ନାୟିକା: ଯଉବନ ଏକ କୁହୁଡ଼ିର ଘର
ଆଗାମି ବସନ୍ତ ପାଇଁ
ଘଡ଼ିକେ ଭସାଏ ଘଡ଼ିକେ ମିଶାଏ
ସେତ, ଉଛୁଳା ପାହାଡ଼ି ନଈ
ନାୟକ: ତା ବୁକୁର ସେଇ ଉଛୁଳା ଢେ଼ଉରେ
ଲହରି ଭାଂଗେ ମୋ ପ୍ରିୟା । ॥୧॥

ନାୟିକା: ଯଉବନ ଏକ କୋଇଲିର କୁହୁ
ଆମ୍ବ ବଉଳର ବାସ
ଅନାଗତ କେଉଁ ନିଦାଘ ପାଇଁ ସେ
ଜୀବନର ମଧୁମାସ
ନାୟକ: ଝେରା ଚଇତିର ନିଦୁଆ ପବନେ
ଅଳସ ଭାଂଗେ ମୋ ପ୍ରିୟା । ॥୨॥



## ଯଦି ତୁମେ ହୋଇଥା'ନ୍ତ ଅଳ୍ପ ଟିକେ ଗୋରୀ

ପିନ୍ଧିଥିଲେ କୁମ୍ଭପକା ଶାଢ଼ୀ ସମଲପୁରୀ
ତେବେ ତମେ ଦିଶୁଥା'ନ୍ତ ସରଗର ପରୀ
(ତମ) ଚେହେରା ଚକ୍‌ମକ
ଚାହାଣୀ ଜକ ଜକ
ହେଲେ ଛାତିଟା ଦକ ଦକ କାହିଁକି ?
କ'ଣ... ଦିହଟା ଭଲ ନାହିଁ କି ? ॥୦॥

ସାବନା ଦେହକୁ ତମ କୁଂଚ କୁଂଚ କେଶ
ଚଗଲା ଆଖିକି ତମ ବଣମଲ୍ଲି ହସ
କାହାପାଇଁ ସଜେଇଚ ରଙ୍ଗାଝିଅ ବେଶ
କୁହ, ମନଟା ଛକ ପକ କାହିଁକି
କ'ଣ....ଦିହଟା ଭଲ ନାହିଁକି ? ॥୧॥

ଝିଅ ନୁହଁ ତମେ ଏକ ଅସଲି ମାଣିକ
ତମ ପାଇଁ ସହରରେ ଅନେକ ବଣିକ
ଖୋଜୁଚ କି ଜଣେ ତମ ମନର ରସିକ
କୁହ, ମନଟା ସକ ସକ କାହିଁକି
କ'ଣ...ମନଟା ଭଲ ନାହିଁ କି ?
ଦିହଟା ଭଲ ନାହିଁ କି ? ॥୨॥



(ବର୍ଷା ଅନୁଭୂତି)

## ବରଷାରେ ଓଦା ହୋଇ

ଛତା ତଳେ ଠିଆ ହୋଇ
ଟୁପ୍ ଟାପ୍ କଥା କେତେ ମଧୁର
ଦରଜାଟା ଆଉଜେଇ
ମନର ଦରଜା ଫେଇ
ଚୁପ୍ ଚାପ୍ କଥା କେତେ ମଧୁର। ॥୦॥

ଅମାନିଆ ବରଷାଟା ଦେହ ତ ଭିଜେଇ ଦିଏ
ଭିତରେ ଜଳେଇ ଦିଏ ନିଆଁ
ପାଖକୁ ପାଖକୁ ଆସି କଥା କୁହ ହସି ହସି
ଛୁଇଁବାକୁ ଡ଼ରଲାଗେ କିଆଁ
ବାହାରେ ମାରେ ବିଜୁଳି
ଭିତରଟା ଉଠେ ଜଳି
ରିମ୍‌ଝିମ୍ ବରଷାର ଗୀତ କେତେ ମଧୁର। ॥୧॥

ଅବୁଝା ଏ ପବନଟା ଦେହ ତ ଥରେଇ ଦିଏ
ବୁଝେନା ଏ ମନ କେତେ ଆତୁର
ଛିଟ ତୋ ପାଟ ଓଢ଼ଣୀ
ମନ କଥା ପାରେ ଜାଣି
ଭିଜା ପଣତର ମଜା କେତେ ମଧୁର। ॥୨॥



## ପ୍ରୀତି ତୁମେ ଏ କି କଲ

ଯାହା କଲ ଏ କି ଭଲ କଲ

ମଥା ଥାପିବାକୁ କୋଳ ତ ଦେଲନି

ଆଖିରୁ ମୋ ନିଦ ଚୋରି କଲ । ॥୦॥

ନାଁ ଟି ତମର ପ୍ରୀତିନନ୍ଦା ହାୟ

ଗାଁ ତମ ପ୍ରୀତିପୁର

ମାତର ତମର ରୀତିଟା ଓଲଟା

ପ୍ରୀତି କଥା ବହୁ ଦୂର

ଭଲ ପାଇବାର ସପନ ଦେଲନି

ରାତିଟା ଚୋରାଇ ନେଲ । ॥୧॥

ଭଲ ପାଇବାର ଗୀତ ଗାଇ ଗାଇ

ବୁଲିଲି ମୁଁ ରାଜପଥେ

ରାଜ ଦ୍ୱାରେ ଯାଇ ଭିକ ମାଗିବା କି

ଏତେ ବଡ଼ ପାପ ସତେ

ମୁଠି ଭରି ଥରେ ଭିକ ତ ଦେଲନି

ଥାଳ ମୋର ଭାଙ୍ଗି ଦେଲ । ॥୨॥



## ତୁମେ କୁହ କଳପନା

ମୁଁ କହେ ସତ

ତୁମେ ମୋର ହସ ଲୁହ

ମୁଁ ତୁମ ମିତ

ଜୀବନର ପଥେ ପଥେ

ଆମେ ଦୁହେଁ ପ୍ରେମର ସଂକେତ । ॥୦॥

ତୁମେ କୁହ ଏ ଜୀବନ ଦୁଃଖ ମରୁର ବାଲି

ମୁଁ କହେ ଏ ଜୀବନ ସୋହାଗ ସପନ ଖାଲି

ଏଇ ଆମ ଜୀବନର ସଂକେତ । ॥୧॥

ତୁମେ କୁହ ଏ ଆକାଶ ଶୂନ୍ୟତା ସୀମାହୀନ

ମୁଁ କହେ ଉଏଁ ଏଠି ପ୍ରଣୟର ନୀଳ ଜହ୍ନ

ଏଇ ଆମ ମିଳନର ସଂକେତ । ॥୨॥



## ଏମିତି କେଉଁ ପକ୍ଷୀ ଅଛି

ଯାହାର ନାହିଁ ଡ଼େଣା
ଏମିତି କେହି ଝିଅ ବି ନାହିଁ
ଆଖିକୁ ଚାହିଁ ପାରିବ କହି
ତାକୁ ପୀରତି ନାହିଁ ଜଣା । ॥୦॥

ପନ୍ଦର ପୂରି ଷୋହଳ ହେଲେ
ସାଜେ ସେ ମଧୁମତୀ
ଯଉବନର ପଦ୍ମବନେ
ଖୋଜେ ସେ ମଧୁପ୍ରୀତି
ରାତିରେ ଫୁଟେ ଝରା ବକୁଳ
ଅଜଣା ଅଳି କରେ ଆକୁଳ
ତା'ର ହୃଦୟେ ବାଜେ ବୀଣା । ॥୧॥

ଷୋହଳ ପୂରି ସତର ହେଲେ
ବତୁରି ଯାଏ ମନ
ଅଠର ପରେ ଓଠରୁ ତା'ର
ଉତୁରେ ଅଭିମାନ
କୋଡ଼ିଏ ପରେ ଯୋଡ଼ିଏ ଦିନ
ଉଜାଡ଼ି ଯଦି ନଦେଲା ମନ
(ତେବେ) ସେକି ଯୁବତୀ ପଣେ ଗଣା ? ॥୨॥



## ସନ୍ୟାସିନୀ ଗୋ ଚଂପକ ପ୍ରିୟା ମୋର

କାହିଁକି ବାନ୍ଧିଲ ରେଶମୀ ପ୍ରଣୟ ଡ଼ୋର
ଅଂତରେ ଭରି ଜହର ପରାଗ ରେଣୁ
ଦଂଶନ କର ନୟନେ ମୋ ବାରଂବାର ।
ପ୍ରିୟା ମୋର.... ॥୦॥

ଲୁବ୍ଧକ ତୁମ ମହକେ ପାଗଳ କରି
ପୀୟୂଷରେ ଦେଲ ହୃଦୟ ମୋ'ର ଭରି
ମୁଗ୍ଧ ମାନସେ ଯଦି ମୁଁ ଆସିଛି ଧାଇଁ
ଚୁମ୍ବନ ନୁହେଁ ଦଂଶନ ହେଲା ସାର । ॥୧॥

ମହକେ ପାଗଳ ମନତ ପାରେନା ବୁଝି
ପ୍ରଣୟ ବେଳାର ବାଲିଘର ଯାଏ ଭାଜି
ସପନ ବିଳାସୀ ନୟନେ ଅଶ୍ରୁ ଭରି
ତମେ ତ ଟାଣିଛ ମୋ ପଥେ ଲକ୍ଷ୍ମଣ ଗାର । ॥୨॥

ଯେ ନୟନେ ଅଛି ପ୍ରୀତିର କଜ୍ଜଳ ଭରି
ଧୋଇକି ପାରିବ ଶତ ଲାଂଛନା ବାରି
ଚଂପକ ପ୍ରିୟା ଚଂପକ ବନେ ତୁମ
ବନ୍ୟା ରଚିବ ପ୍ରଣୟୀ ଆଖିର ନୀର । ॥୩॥



## ମୁଁ ଏକ ଖିଆଲି କବିର କବିତା

ଲେଖ ମତେ ଫୁଲ ଲେଖନୀରେ
ମୁଁ ଏକ ପିଆସୀ ରାତ୍ରିର କଥା
ଲେଖିଯାଅ ମତେ କାହାଣୀରେ । ॥୦॥

ମୁଁ ଏକ ସ୍ୱପ୍ନରାତି ଯାଏ ଗୋ ପାହି
ମୋ ବୁକେ ତିମିର ଖାଲି, ଚନ୍ଦ୍ର ନାହିଁ
ଏକାକିନୀ ମୁଁ ଗୋ ଲୁହର ଚକୋରୀ
ଝୁରେ ମୁଁ ବିରହ ରାଗିଣୀରେ । ॥୧॥

କୁହ ସେ ଶିଳ୍ପୀ କିଏ ଜୋଛନା ରାତେ
ଲେଖିବ କାହାଣୀ ମୋର ପାଷାଣ ଗାତ୍ରେ
ସୁଷମା ପାଗଳ ଶିଳ୍ପୀ ଗୋ ତୁମେ କୁହ
କେତେ ଭାଷା ମୋର ଉହାଣୀରେ । ॥୨॥



## (ମିଳନ ତୃଷ୍ଣା)

*ହେ ସାଗର ଆଜି ତୁମକୁ ଗୋଟିଏ ପ୍ରଶ୍ନ*

ତୁମ ବୁକେ କିଆଁ ଏତେ ତୃଷା ଆଉ ସ୍ୱପ୍ନ ? ||୦||

ତୁମେ ତ ବାରିଧି ଜଳର ଜଳଧି

କେତେ ଯେ ବର୍ଷା ଝରେ ବୁକୁ ଭେଦି

ତୁମକୁ କି ଦେବ ଏଇ ଟିକି ନଦୀ

କି ପାଇଁ ତୁମେ ଗୋ ମଗ୍ନ । ||୧||

ଚିରଦିନ ପାଇଁ ତୁମ ତୀର ମାଟି ଭିଜା

ଏ ନଦୀ କି ଦେଇ ତୋଷିବ ଦିଅନା ଲଜ୍ଜା

ଆସିନି ମିଳନ ଲଗ୍ନ । ||୨||



## ଭୁଲି ଯାଇଥିଲି ଜୀବନ ରଂଗ

ଅନେକ ଫୁଲର ସୁରଭି
ମୋ ନୀରବ ବୀଣା ବଜାଇ ତୁମେ ଗୋ
ଜଗାଇଲ ରାଗ 'ପୂରବୀ'। ||୦||

ଶୋଇ ଯାଇଥିଲେ ମୋ ବୀଣାର ଯେତେ ତାର
ଜଗାଇଲ କିଆଁ ଦେଇ ତା ତନୁରେ
ପରଶର ଉପହାର
ବୁଝାଇଲ କିଆଁ ଜୀବନରେ ମୋର
ଅଛି ତୁମ କିଛି ଦାବୀ। ||୧||

ଭୁଲି ଯାଇଥିଲି କାହାକୁ ପାଇଛି ଭଲ
ଜୀବନର ପଥେ ଡ଼ାକି ନେଇ ବାରେ
ଆପଣାର କରିନେଲ
ଶୂନ୍ୟ ଅଂଜଳି ଭରିଛି ଆଜି ମୁଁ
ତୁମରି ପରଶ ଲଭି।। ||୨||



## ଏକଇ ପ୍ରଶ୍ନ ପୃଥିବୀକୁ ମୋର

ଆଗାମୀ ଦିନର ପାଇଁ
କିଏ ସେ ବଂଚିଛି କଜଳ ଆଖିରେ
ସଜଳ ସପନ ନେଇ । ॥୦॥
ତୃଷିତ ଆଖି ମୋ ଅଶ୍ରୁ ଆଷାଢ଼ ଋହେଁ
ପୁରୁଣା ସ୍ମୃତିର ଖିଅଟିଏ ଯେବେ
ମନର ଇଲାକା ଛୁଏଁ
ତୃଷିତ ଆଖିର ତୃଷା କି ମେଣ୍ଟିବ
ଆଷାଢ଼ ଆଶିଷ ପାଇ ? ॥୧॥
ଲୁହର ଚକୋରୀ ଲୁହରେ ମରୁଛି ଜଳି
ଲୁହ ବରଷଣେ ମନ ତଟିନୀରେ
କୋହର ଲହରି ତୋଳି
କୁହ ହେ ପୃଥିବୀ ଲୁହର ନଦୀ କି
ବହେନା ଦି କୂଳ ଛୁଇଁ ? ॥୨॥



*ପାନ୍ଥ ପକ୍ଷୀ ମୁଁ ପରିଚୟ ମୋ ଅଜଣା*

କେହି ତ ଜାଣେନା ମୋ ନାଁ ଗାଁ ଠିକଣା ।  ॥୦॥

ଏ ଆକାଶ ସୀମାହୀନ

ଜାଣେନା ଉଡ଼ିବି ଏମିତି ମୁଁ କେତେ ଦିନ

ଗାଇ ଗାଇ ଉଡ଼େ ସତ

କେହିତ ବୁଝେନା ମୋର ଅବୁଝା ସଂଗୀତ

ଅବୁଝା ହେଲେବି ଗୀତ ଗାଇବାକୁ

କେହି ତ କରିନି ମନା ।  ॥୧॥

ସୁର ମୋ ଥକିବ ନାହିଁ

ଜଣେ ହେଲେ କେହି ଦରଦୀ ତ ଥିବ କାହିଁ

ଦିନେ ମୋ ମରଣ ପରେ

ଗାଇବ ମୋ ଗୀତ ଏଇ ମୋ ପୁରୁଣା ସୁରେ

କବରୀର ବାସି ଫୁଲ ଲେଖନୀରେ

ଲେଖିବ ମୋର ଠିକଣା ।  ॥୨॥



ଏଇ ବିଜନେ କୁହୁ କୁଂଜନେ
ମଜ୍ଜିଯିବା ଆସ ହଜିଯିବା
ଏଇ ଲଗନେ । ॥୦॥

ଏଇ ଅଦୂରେ ମୃଦୁ ମଧୁରେ
ଦିନେ ତୁମରି ଗୀତ
ତରଂଗ ତୋଳି ମମତା ବୋଳି
ମତେ କଲା ଆହତ
ସେଇ ତରଂଗ ଅଳିଭା ରଂଗ
ଦେଲା ଆମ ସପନେ । ॥୧॥

ନିଶି ସପନେ ଅତି ଗୋପନେ
ଦିନେ ଆସିଲ ତୁମେ
ଅତି ନିଃସଂଗ ସାଥି ବିହଂଗ
ସାଜି ବସିଲ ତୁମେ
ଆସିଲା ଅଳି ଫୁଟିଲା କଳି
ଆମ ମଧୁ ମିଳନେ । ॥୨॥



## *ମାଳବିକା ଆଗୋ...*

ମାଳବ ଦେଶରୁ ତୁମ ଚିଠି ଗୋଟି ପାଇଲି
ପାଇଁବା ଆଗରୁ କାଉ ରାବି ଦେଲା
ମୋ ମନେ ଗାଇଲା କୋଇଲି । ॥୧॥

ଏ ଋତୁ ବରଷା ଶ୍ରାବଣୀ
କିଏ ବା ନ ଜାଣେ ଏହା
ହେଲେ ତୁମ ଲେଖା ମୋମନ କାନନେ
ଫଗୁଣ ଆଣିଲା ଆହା
ହାୟ ! ମୁଁ କି ଫୁଲବନେ ହଜିଗଲି । ॥୨॥

ବାହାରେ ଗୋଲାପ ଗଂଧ
ଭିତରେ ସ୍ମୃତିର ଢ଼େଉ
ତୁମ ହାତ ଲେଖା ଭିତରେ ବାହାରେ
ସବୁଠିଁ ଝରୁଛି ମହୁ
ହାୟ ! ମୁଁ କି ମହକରେ ବୁଡ଼ିଗଲି । ॥୩॥



## ଆମେ ଦୁହେଁ ଦୁଇ ଫୁଲ ଗୋଟିଏ ବୃନ୍ତରେ

ଅନେକ ହସ ପାଖୁଡ଼ାରେ ଆମ
ସୁବାସ ଅନ୍ତରେ। ॥୦॥

ଆମେ ତ ଲେଖିଛୁ ଅନେକ କବିତା
ଭଲ ପାଇବାର
ନରମ ମନର ସରମୀ ଲତାରେ
ଫୁଟି ଲୋଟିବାର
ଧୋଇ ଦେବା ପାଇଁ ବିରହ ଦୁଃଖ
ମିଳନ ଅଶ୍ରୁରେ। ॥୧॥

ଏଇ ଯେ ଶୁଭୁଛି ସୃଜନୀ ବେଣୁରେ
ମଧୁର ମିଳନ ସୁର
ପୁଷ୍ପିତା ଏଇ ପୃଥିବୀରେ ଆଜି
ହେବ ଆମ ଅଭିସାର
ଭରି ଦେବାପାଇଁ ଜୀବନ ପାତ୍ର (କୁ)
ପ୍ରେମର ନୀଳରେ। ॥୨॥



## ସହର ତଳି ଗାଁ

ମୁଁ ଜାଣେନା ତା'ର ନାଁ....
ସେଇ ଗାଁରେ ମୋ ମନେ ଯିଏ
ଲଗାଇ ଦେଲା ନିଆଁ
ସେଇତ ମୋର ପ୍ରିୟା । ॥୦॥

ସେଇ ଗାଁରେ ବହୁଚି ଯେଉଁ ନଈ
ସହଜେ ସେତ ଭାରି ମନୋଇ
ବହେ ଦି କୂଳ ଖାଇ
ସେଇ ନଈରେ ବାହେ ମୁଁ ନାଆ
ନାଉରିଟିଏ ହୋଇ
ଘାଟରେ ତାକୁ ଦେଖେ ମୁଁ ନିତି
ଲାଗେ ସେ ନୂଆ ନୂଆ । ॥୧॥

ସଂଜ ସଂଜୁଆ ନିରୋଳା ଘାଟ ଦେଖି
ପାଖକୁ ଦିନେ ଆସିଲା ସିଏ
ସାଂଗରେ ଥିଲେ ସଖୀ
ପଠାଇ ଦେଲା କାଗଜଟିଏ
ଅକୁହା କଥା ଲେଖି
ହେଲେ, ଚିଠିରେ ଅବା ହୁଏକି କୁହ
ପୀରତି ଦିଆନିଆ ? ॥୨॥

(ସଜଫୁଲ)

-୧-

## କିଏ କହେ ନାଉରି ମତେ

କିଏ କହେ ମାଝି
ଘର ମୋ ଦଦରା ନାଆ
ଗାଁ ମୋ ଦରିଆ ମଝି । ॥୦॥
ମୁଁ ଏକ ଅଝଟ ଝଡ଼
ଦରିଆ ଛାତିରେ
କିଏ ସେ ଡ଼ାକଇ ମତେ
ଏ ଅମା ରାତିରେ
ଖୋଜେ କି ଆସରା ଟିକେ
ମୋ ଅଝାଲ ଛାଇ ତଳେ
ସପନେ ଯିବାକୁ ହଜି । ॥୧॥
ଆକାଶେ ପୂବେଇ ବାଆ
କରେ ମତୁଆଲା
ତଳେ ମୋ ଦଦରା ନାଆ
ମାନେନା ଆହୁଲା
ଘାରିଲାଣି ଘୋର ନିଦ
ଅଝାଲ ଆଖିକି ଆହା
ଶୀତୁଆ ପବନ ବାଜି । ॥୨॥



(ସଜଫୁଲ)

-୨-

## ହେ ନାଉରି, ଟିକି ନାଉରି

ଟୋକା ନାଉରି ନା ବୁଢ଼ା ନାଉରି
ଦରିଆର ପାଣି ଅତଳ ଅଥଳ
ଦିଶେ ନାହିଁ ଏପାରି ସେପାରି । ॥୦॥

ସାତ ତାଳ ପାଣି କଳା ଭଅଁର
ତା'ତଳେ ଅଛି ଜେମା ନଅର
ତା'ଭିତରେ ଯାଇ ଫରୁଆ ଅଛି
ଫରୁଆ ଭିତରେ ମରୁଆ କଷି
ଅଲିଅଳୀ ଖେଳେ ଚକା ଭଉଁରୀ । ॥୧॥

ଛିଡ଼ା ଅଝାଲକୁ ଦଦରା ନାଆ
କାହିଁକି କରୁ ତୁ ବଡ଼ପଣିଆ
ଜେମା କି ବସିଛି ତତେ ଅନାଇ
ଆହୁଲା ମାରୁତୁ ମତେ ନରହିଁ
(ମୁଁ) ତୋ ପାଇଁ ରଖିଚି ଫୁଲ ଚଉଁରୀ । ॥୨॥



(ସଜଫୁଲ)

-୩-

ନାୟକ: *ହୟା ହୋ....ହୟା....ହୋ...*

ନାୟିକା: ନାଉରୀ....

ଭିଡ଼ି ତୁ ମାର କାତ ଆଉରି । ||୦||

ନାୟକ: ହୟା...ହୋ...ହୟା...ହୋ...

ନାୟିକା: ଭିଡ଼ି ଅଝାଲ

ନାୟକ: ହୟାରେ...ହୟା

ନାୟିକା: ଲଗା ମଶାଲ

ନାୟକ: ହୟାରେ...ହୟା

ନାୟିକା: ହୁଅନା୍ ଗେଲ

ନାୟକ: ହୟାରେ...ହୟା, ଅଝାଲ ନୁହେଁ ସେ ମୟାର ଜାଲ

ପବନେ ଟାଣୁଚି ଥିରି ଥିରି ଥିରି । ||୧||

ନାୟକ: ଅଥଳ ପାଣି

ନାୟିକା: ହୟାରେ...ହୟା

ନାୟକ: ପାରୁକି ଜାଣି

ନାୟିକା: ହୟାରେ...ହୟା

ନାୟକ: ଉଡୁଚି କାନି

ନାୟିକା: ହୟାରେ...ହୟା, କାନି ନୁହେଁ ଏତ ଛିଟ ଅଝାଲ

ତୋ ମନେ ଉଡୁଚି ସିରି ସିରି ସିରି । ||୨||



## ସେ ଏକ ପୂର୍ଣ୍ଣିମା ରାତି

ଆଉ ତା ଯୋଛନା ନଇ
ସପନରେ ହଜିଥିଲେ
ନୀଳିମା ଓ ନୀଳକଇଁ
ଏକ ଆନେ ରହିଁ ରହିଁ। ||୦||

ନୀଳିମାରେ ଭରିଥିଲା ଯେତେ ନୀଳଢେଉ
ନୀଳ କଇଁ ବାଂଧୁଥିଲା ତା ନୀଳ ପଣତେ
ନୀଳକଇଁ ସପନର ନିଶା ପିଉ ପିଉ
ନୀଳିମା ବି ହଜିଥିଲା ତା'ର ଅଜାଣତେ
ହଜିଲା ହଜିଲା ମନେ, ଯାହା ଥିଲା ଜୀଇଁ
ଖୋଜିଲା ଖୋଜିଲା ଆଖି ତାହା ଗଲା ପାଇ
ସପନେ ମଗନ ହେଲା ଟିକି ନୀଳକଇଁ। ||୧||

ଦିନରାତି ମାସ ବରଷରେ ବିତିଗଲା ଯୁଗ
ଦିନୁ ଦିନ ମନେମନେ ବଢ଼େ ଅନୁରାଗ
ସେ ରାତିର ନୀଳଢେଉ ସୁନୀଳ ସପନ
ନୀଳିମାରେ ଭରିଦେଲା ଦୁଇଟି ପରାଣ।
ହଜିଲା ହଜିଲା ମନେ ଯାହା ଛପିଥିଲା
ଖୋଜିଲା ଖୋଜିଲା ଆଖି ତାହା ପାଇଗଲା
ସପନ ତ ସତ ହେଲା ଦୁଇମନ ପାଇଁ। ||୨||



(ସଜଫୁଲ)

-୩-

ସାଗର: ଅନୁରାଗ ଗୀତେ ଯଦି
ପାଶେ ଆସି ଡାକ ନିତି
ଦୂରେ ଦୂରେ ରହ କିଆଁ କୁହନା
ନଦୀ: ନଦୀ ମୁଁ ଗୋ ଗୀତ ଗାଇ
କୁଳୁକୁଳୁ ହସେ ଖାଲି
ଲହରିରେ ମନଛଇଁ ଜାଣେନା। ||୦||
ନଦୀ: ମୁଁ ଯେ ତୁମ ଟିକି ପ୍ରୀତି ନଇ
ତୁମ ପାଇଁ ଯାଏ ନିତି ବହି
ସାଗର: ତୁମେ କିଗୋ ଆସ ବହି
କୁଳୁକୁଳୁ ଗୀତ ଗାଇ
ସାଗରେ ମିଶିବା ପାଇଁ
ନଦୀ: କିଆଁ ମତେ ପାଶେ ଡ଼ାକି ନିଅନା। ||୧||
ସାଗର: ବୁକେ ମୋ ଲହରି ହୋଇ
ଯୁଗ ଯୁଗ ଥିବ ଜୀଇଁ
ନଦୀ: ତୁମେ ପରା ସାଗର
ପ୍ରୀତି ଅନୁରାଗର
ପ୍ରଥମ ମିଳନ ପାଇଁ
ସାଗର: ଛାଡ଼ ନଦୀ ଆଗୋ ମିଛ ବାହାନା। ||୨||



*ମରୁ ପଥିକ ମୁଁ ମରୁପଥେ ଘୁରି ମରେ*
ପ୍ରଣୟିନୀ ମୋର ମରିଚିକା ପ୍ରିୟା
ଯାଅ ତୁମେ ଦୂରେ ଦୂରେ । ॥୦॥

ପିପାସିତ ପ୍ରାଣେ ଅନେକ ପିପାସା ନେଇ
ଘୁରି ଘୁରି ଆଜି ଥକି ମୁଁ ପଡ଼ିଛି ଶୋଇ
ମରୁର ବୁକୁରେ କିଛି ବାଲି ସାକ୍ଷୀ କରି
ସଂଚିତ ପାପ ମୋ ଧୋଇଛି ଆଖିରେ ନୀରେ । ॥୧॥

ହେମାଙ୍ଗୀ ତୁମର ନୟନର ଜାଦୁକରୀ
ମିଳନ ପିଆସୀ ମରମ ଦେଇଛି ଘାରି
ଜୀବନ ବେଦୀରେ ପ୍ରଣୟ ଆହୂତି ଦେଇ
ଆଜି ମୁଁ ଯାଉଛି ନରକ ଅନ୍ତପୁରେ । ॥୨॥



*ଏ ଜୀବନେ ଯଦି ପାରନା ପ୍ରଦୀପ ଜାଳି*

ସମାଧି ପରେ ମୋ ଜାଳି ଦେବ ସେଇ ଶିଖା

ଏ ଜୀବନେ ଯଦି ପାରନା ଆସି ଗୋ ପାଶେ

ସରଗ ତଟିନୀ ସେ ପାରିରେ ହେବ ଦେଖା । ॥୦॥

ସେ ସମାଧି ପରେ ଲେଖିବନି ମୋର

ସଂକିତ ପରିଚୟ

ଲେଖି ଦେବ ଖାଲି ଅଲିଭା ଅକ୍ଷରେ

"ପ୍ରଣୟର ହେଉ ଜୟ"

ତାର ପାଶେ ଏକ ଦୀପଶିଖା । ॥୧॥

ସରଗ ମରତ ଜୀବନ ନଦୀର

ଦୁଇ କୂଳ ଯଦି ହୁଏ

ଏପାରିରେ ଅବା ସେପାରିରେ ମୋର

ସମାଧି ଗଢ଼ିବା ଯାଏ

ତାର କୁଳୁଗୀତି ହେଉ ଲେଖା । ॥୨॥



## ସ୍ମୃତି ଆଗୋ ତୁମେ କିବା

ଚୁପ୍ ରହି ପାରନା

ଆଶ୍ରୁର ନାମେ ତୁମେ

ଦୁଇଧାର ଝରଣା । ॥୦॥

ଜୀବନେ ଗୋ ନାମ ତୁମ

ପ୍ରୀତିର କାମନା

ମରଣେ ଗୋ ନାମ ତୁମ

ଲୁହର ଝରଣା

ଶୟନେ ବି ସପନେ ବି

ତୁମେ ତ ଉନ୍ମନା । ॥୧॥

ବିଜନେ ଗୋ ନାମ ତୁମ

ବିରହରାଗିଣୀ

ସ୍ମରଣେ ଗୋ ନାମ ତୁମ

ଅଶ୍ରୁତଟିନୀ

ମୋ ଦିବସ ରଜନୀରେ

ତୁମେ ମୋ ଯାତନା । ॥୨॥



*ତନ୍ଦ୍ରା ଯଦି ଗୋ ଗୁଂଜନ ଦିଏ*

କ୍ଲାନ୍ତ ମନର ଶାଖାରେ
ଭରି ଦେବ ସେକି ରିକ୍ତ ମନ ମୋ
ଭଲ ପାଇବାର ଭିକ୍ଷାରେ । ॥୦॥

ରିକ୍ତ ମନ ମୋ ବୁଝେ ନାହିଁ
ଗୁଂଜନ କିଛି ବୁଝେ ନାହିଁ
କ୍ଲାନ୍ତି ଯେ ତା'ର ରାତିର ସପନ
ଉଆଁସ ଖୋଜୁଛି ଯେଛନାରେ । ॥୧॥

ତନ୍ଦ୍ରା ତୁମେ ଗୋ ବିଳାସିନୀ
ସପନର ଅଭିସାରିଣୀ
କ୍ଲାନ୍ତ ମନରେ ସପନ ତୁମର
ଇତି ହୁଏ ମୃଗତୃଷ୍ଣାରେ । ॥୨॥



## ସାଥି, ପ୍ରୀତି ବତାସରେ

ପଥହରା ଏଇ ପାନ୍ଥ ପକ୍ଷୀଟି
ହଜିଯାଉ ଆକାଶରେ । ॥୦॥
କ୍ଲାନ୍ତ ଡ଼େଣା ମୋ ପାରେ ନାହିଁ ଉଡ଼ି
ଏକା ଏକା ଏତେ ଦୂର
ଦିଗହଜା ଆଖି କଳି ତ ପାରେ ନା
ନୀଡ଼ ଆଉ କେତେ ଦୂର
କେତେ ସୁଅ ବତାସରେ । ॥୧॥
ଝଡ଼ର ଆଘାତେ କ୍ଷତ ଡ଼େଣା ତାର
ଶିକ୍ତ ରକତ ଧାରେ
ସାଥିହୀନ ତା'ର କ୍ଲାନ୍ତ ମନରୁ
ରିକ୍ତ ଭାବନା ଝରେ
କେତେ ପଥ ଆକାଶରେ । ॥୨॥
ଝୁମି ଆସେ ଯଦି ରାତିର ଆକାଶ
ବତାସି ଲଗନ ନେଇ
ହାତ ପାତି ମାଗେ ଏକାକି ମନ ତା
ଆଶରା ଟିକିଏ ପାଇଁ
ଅଭିମାନୀ ଆକାଶରେ । ॥୩॥



## *ନଦୀର ନାମ 'ପ୍ରୀତି'*

ଛାତିରେ ତାର ପିଟଇ ମଥା
ଊର୍ମି ମଧୁମତୀ । ॥୦॥
ମନ ଯେ ତାର ସପନପୁର
ତୀରରୁ ଝରେ ସ୍ନେହ
ହୃଦୟ ଭରା ବାଲୁକା ତାର
ପଣତ ଭିଜା ଲୁହ
ଛଳ ଛଳ ତା ଲହରି ଗାଏ
ମିଳନ ମଧୁଗୀତି । ॥୧॥
ଅତୀତ ଝୁରେ ବଣର ଛାଇ
ପାହାଡ଼ି ବନ ଭୂମି
ଆଜିର ମନ ଆକାଶ ଖୋଜେ
ଉତ୍ତଳା ମଉସୁମୀ
ଅଜଣା କେଉଁ ବଂଧୁବାସେ
ଧାଏଁ ସେ ନିତି ନିତି । ॥୨॥



ଦେହର ଦହନ ବୁଝି ମେଘ ହୋଇ ଗଲ ହଜି
ତୃଷିତ ଏ ମାଟିର ଦେହରେ
ତଥାପି ଜଳୁଛି ଦେହ ବରଷାର ଅଭିସାରେ
ଜଳେ ନିଆଁ ଭିତରେ ବାହାରେ
ଅକୁହା ଏ ମନକଥା କହିବି କାହାରେ । ||୦||
ବାହାରେ ଉତୁରା ପ୍ରୀତି ମେଘରୁ ମଣିଷ ଯାଏ,
ଭିତରେ ବତୁରା ସ୍ମୃତି
ମନର ରକତ ପିଏ
ଆତୁର ଏ ମନକଥା କହିବି କାହାରେ
କୁହ, କହିବି କାହାରେ । ||୧||
ଫୁଲର ବୋଇତ ତୁମ ଦେହର ଦରିଆ ଢେଉଁ
ଆକାଶର ତାରାଫୁଲ
ସାଗରର ମୋତି ହୋଇ
ଖସିପଡ଼େ କବରୀରୁ ମୋଦେହ କବର ପରେ
ଅଲିଭା ଏ ମନକଥା କହିବି କାହାରେ । ||୨||



## ହେ ବରଷା କୁହ ତୁମେ କାହିଁକି ରାଗୁଚ

ତୁହାଇ ତୁହାଇ ଏଠି, ବଡଦରେ ମଥା ପିଟି

ଶ୍ରାବଣର ଆକାଶରେ ଅଳସ ଭାଂଗୁଚ । ॥୦॥

ତୁମ ମେଘ ବରଷା ରେ ଭିଜିବା ଆଗରୁ

ଆଉ କାହା ଅନୁରାଗ

ମତେ ଭିଜାଇଛି

ତୁମ ବିଜୁଳିର ରଂଗ ମାଖିବା ଆଗରୁ

ଆଉ କାହା ପ୍ରୀତି ରଂଗ

ମତେ ରଂଗେଇଛି

ତୁମେ ଖାଲି ମୋ ଉପରେ ମିଛରେ ରାଗୁଚ । ॥୧॥

ବରଷାର କିବା ଦୋଷ ପ୍ରୀତି ବୁଣିବାରେ

ପାପବୋଲି କିଏ ତାକୁ

ପାରିବ ବୁଝାଇ

ହୃଦୟରେ ଗାରଟିଏ ଟାଣିଦେଲା ପରେ

ଅଇନାର ଛବି ପରି

ହେବ କି ଲିଭାଇ

ମିଛେ ତୁମେ ଭିକାରୀକୁ ଭିକ୍ଷା ମାଗୁଛ । ॥୨॥



## *ମୋ ଆଖିର ଲୁହ ସବୁ ଝରିବାକୁ ଦିଅ*

ଏ ଆଖି ତ ବରଷିନି ଅନେକ ଦିନରୁ

ପୀରତିର ନିଆଁ ବାରେ ଲଗାଇ ଦିଅ ଗୋ

ଏ ମନ ବନାନୀ ଜଳି ଲିଭିବା ଆଗରୁ । ॥୦॥

କୁହୁଳା ଏ ମନ ନିଆଁ ଜଳି ତ ପାରେନା

ବୁକୁ ତଳେ ଜଳେ ଧିମା ଧିମା

ଅମର ଆଶିଷ ଦିଅ ଆମରି ପ୍ରେମକୁ

ଛାତିରେ ମୋ ଦେଇ ମୃଦୁ ଚୁମା

ଏ ବୁକୁର ସ୍ପନ୍ଦନ ଥମିବା ଆଗରୁ । ॥୧॥

ତୃଷିତ ଏ ଛାତି ମୋର ଅନେକ ଦିନରୁ

ପିଇବାକୁ ଅଶ୍ରୁର ବାରି

ମେଘର ଆକାଶେ ଚାହିଁ ନିତି ଜୀଏଁ ମରି

ଆଷାଢ଼ର ଚାତକଟି ପରି

ପୃଥିବୀ ବରଷା ବିନ୍ଦୁ ଚାଖିବା ଆଗରୁ । ॥୨॥



*ଆକାଶର ସବୁତାରା ଲିଭିଗଲା ପରେ*

ତୁମେ ତ ରହିବ ସତେ
ସକାଳର କୁଆଁତାରା ହୋଇ
ଜୀବନର ସୁଖ ଦୁଃଖ ସରିଗଲା ପରେ
ତୁମେ ତ ରହିଛ ମୋର
ମନ ତଳେ କଥାଟିଏ ହୋଇ । ॥୦॥

ସ୍ମୃତି ତୁମେ ମନ ତଳେ
ଶିଖାହୀନ ବହ୍ନି କଣିକା
ତୁମରି ଧୂଆଁର ଗାରେ
ମନ ତଳେ ପ୍ରୀତିକାବ୍ୟ ଲେଖା
ସେ ଦହନେ ଜଳେ ଯିଏ, ସିଏ ତ ରହିବ
ପ୍ରଣୟର ପ୍ରତିରୂପ ହୋଇ । ॥୧॥

ସବୁ ସୁଖ ଗଲେ ଝରି
ବଉଦର ବରଷା ସମାନ
ଦୁଃଖ ତ ଥିବ ଗୋ ରହି
ଚିରଦିନ ଚିର ଅମଳିନ
ଦୁଃଖକୁ ଆପଣା କରି ତୁମେ କି ରହିବ ସତେ
ପ୍ରଣୟର ପ୍ରତିବିମ୍ବ ହୋଇ । ॥୨॥



(ରାଗ ସଂଗୀତ)

-୧-

ରାଧିକା ଗଲେ ଗାଧୋଇ
ଯମୁନା ଜଳେ
ବାଟ ଜଗିଛି ମାଧୋଇ
କଦମ୍ବ ମୂଳେ । ||୦||

ତନୁରେ ଭିଜା ବସନ
କାଖରେ କଳସୀ
ସଧୀରେ ଚଳନ୍ତି ରାଧା
ସ୍ୱଭାବେ ଅଳସୀ
ଟମକେ ବାଜେ ଗାଗରା
ନୂପୁର ର ତାଳେ ତାଳେ । ||୧||

ଧନ୍ୟ ସେ ଯମୁନା ନଈ
ଧନ୍ୟ ଗୋପଦାଣ୍ଡ
ଉଇଁଛି ଆକାଶେ ଯହିଁ
କାହ୍ନୁ କଳାଚନ୍ଦ
ଶ୍ରୀରାଧା-ମାଧୋଇ ପାଦ
ଅନ୍ତର୍ଯ୍ୟାମୀ ବିପ୍ର ଭାଳେ । ||୨||



(ରାଗ ସଂଗୀତ)

-୨-

*ଝରଣା...ଝରଣା*

ସୁନୀଳ ବରଣା
କାହା ପାଇଁ ଉନ୍ମନା, କା'ପାଇଁ ବିମନା ତୁମେ
ତୁମ କଥା ତୁମକୁ ତ ଜଣା । ||୦||

ମନ୍ଦେ ମନ୍ଦେ ସଲିଳ ଗାମିନୀ
ଛନ୍ଦେ ଛନ୍ଦେ ସଲଜ୍ଜ ମାନିନୀ
କଂକର ଶିଳା ବୁକେ ଲେଖ ପ୍ରୀତି ସୁର
ମିଳନ ପ୍ରୟାସୀ ଏଣୀ ହୁଏ ଉନ୍ମନା । ||୧||

ଅଂଗେ ତୁମ ଜଳ ଅଭିସାର
ରଂଗେ ତୁମ ସରମେ ନିହାର
ଛଳ ଛଳ ଗୀତେ ତୁମ ଜଳର ନୂପୁର
ଏ ବିରହୀ ମୟୂରେ କରଇ ବିମନା । ||୨||



*ଆଗୋ ମୋର ରୂପସୀ ଚନ୍ଦ୍ରିକା*

ରାଂଦର କବର ପାଶେ ଠିଆ ହୋଇ

ମାଗ କି ଆଲୋକ ଭିକ୍ଷା ? ॥୦॥

ତୁମରି ସେନେହ ରହି ରହି ଘାରେ

ମନ ଅକାଶର ସୀମା ଆରପାରେ

ତୁମେ କି ପାରନା ପଢ଼ି ମୋ ମନରେ

ତୁମରି ସ୍ମୃତି ଲେଖା । ॥୧॥

ଫିକା ପାହାନ୍ତାର ମଳିନ ଜହ୍ନ ମୁଁ

ଲିଭା ଦୀପାଳିର କ୍ଳାନ୍ତ ମନ ମୁଁ

ତୁମେ କି ଭାବିଛ ଲିଭା ଦୀପାଳିରେ

ଆଉ, ଜଳିବ ଆଲୋକ ଶିଖା ? ॥୨॥



(ରାଗ ସଂଗୀତ)

-୪-

*ନା, ନା, ଆଉତୁ ଜଳାନା*

ଏରାତି ବୁକୁରେ ଝରାଇ ଯୋଛନା

ଆଉ ତୁ ଜଳାନା । ॥୦॥

ଶରଦ ରାତିର ବିଧୂରା ଜହ୍ନଗୋ

ଫିକା ପାହାନ୍ତାର ମଳିନ ମନ ମୋ

ଦିଅନାହିଁ ଭରି ବିରହ ବେଦନା । ॥୧॥

ବିରହ ବିଧୁରା ଶରଦ ଶର୍ବରୀ

କାହାକୁ ଝୁରୁଛି ମୋ ବାହୁ ବଲ୍ଲରୀ

ଫୁଲି ଫୁଲି ବହେ ଆକାଶ ଯମୁନା ।। ॥୨॥



(ରାଗ ସଂଗୀତ)

-୫-

**ଶ୍ରୀ ରାଧେ.....**

କୃଷ୍ଣ ମନ ବନ ବିହାରିଣୀ କନକ କୁରଙ୍ଗୀ
କାଦମ୍ବିନୀ ରାଇ, କୃଷ୍ଣ ବିଯୋଗିନୀ ସଂଗୀ
କନକ କୁରଂଗୀ । ||୦||

ପ୍ରେମ କଳ୍ପଲତା ତୁମେ
କୃଷ୍ଣ କଳ୍ପତରୁ
ଝରଇ ଅଧରମଧୁ
ମୂରଲୀ ଅଧରୁ
ଶ୍ୟାମବଂଧୁ ସଂଗ ଲଭି ବନାନୀ ଶୋଭାଂଗୀ
କନକ କୁରଂଗୀ । ||୧||

ତପ୍ତ କାଂଚନ - ଗୌରାଂଗୀ
ବୃନ୍ଦାବନେଶ୍ୱରୀ
ନବ ତମାଳ ଶ୍ରୀତନୁ
ବରଜବିହାରୀ
ଶ୍ରୀଅଂଗେ କୁସୁମ ମାଳା ଶୋଭା ଅନୁରାଗୀ
କନକ କୁରଂଗୀ । ||୨||



(ରାଗ ସଂଗୀତ)

-୬-

## ବଇଶାଖ ଅଇଲା

ନିଦାଘର ପାଦ ଛୁଇଁ ବଇଶାଖୀ ବହିଲା
"ହେ ବଂଧୁ ବିଦାୟ" ବୋଲି ଚଇତାଳି କହିଲା । ॥୦॥

ନିଦାଘର ପାଦତଳେ ତାପିତ ଧରଣୀ
ଶିରୀହୀନା ଗିରିନଦୀ ମନ୍ଦମନ୍ଦ-ଗାମିନୀ
କ୍ଷୀଣ ତାର ଝୀନ ତନୁ କି କଷଣ ସହିଲା । ॥୧॥

ବହିଲା ଝାଂଜି ବତାସ କାଂଜି ଲାଗେ ମଧୁର
ସଂଜବେଳ ନଦୀ ନୀର ଶୀତଳାଏ ରୁଧିର
ଚୂତ ଡ଼ାଳେ ପୀକବଧୂ କୁହୁ କୁହୁ ଗାଇଲା ।॥୨॥

ଘମଘମ ତନୁ ବାଳା ବିନିଦ୍ର ଶର୍ବରୀ
ବାତାୟନ ଖୋଲି ରହେଁ ମୁକୁଳା ତା କବରୀ
ପୀନ ଅଙ୍ଗ ଝୀନ ବାସ ବିଦାୟ ରହିଁଲା । ॥୩॥



(ରାଗ ସଂଗୀତ)

-୭-

*ସଂଗୀତ ମଧୁମୟ....*

ସାତସୁରେ ବଂଧା ପ୍ରଣବ ପୀୟୂଷ

ଛନ୍ଦ, ଭାବ, ସୁର, ଲୟ । ||୦||

ଛନ୍ଦହୀନ ଯଦି ଜୀବନ ସଂଗୀତ

କେଉଁ ସୁରେ କହ ଗାଇବି ସେ ଗୀତ

ଛନ୍ଦହରା ଯଦି କବିର କବିତା

କେମିତି ବା କୁହ ବୁଝିବି ସେ ବ୍ୟଥା

ସେ ଜୀବନ ବିଷମୟ । ||୧||

ସାତ ସୁରେ ବାନ୍ଧି ଜୀବନର ଗୀତି

ଗାଇଯିବା ଆସ ଢ଼ାଳି ଦିଅ ପ୍ରୀତି

ସାତ ଜନମର ଅତୁଟ ବନ୍ଧନ

ଜୀବନକୁ କରୁ ଚଂଦନ ବନ

ହେଉ, ଏ ଜୀବନ ପ୍ରେମମୟ । ||୨||



## ଏ ଦୁନିଆ ଏକ କାଗଜର ପଶାପାଲି

ଜୀବନଟା ଦେଖ ସାପ ଆଉ ସିଢ଼ି ଖେଳ
ଆସ ଘେରାବାଲି
ଖୋଲି ଦିଅ ପଶାପାଲି
ଗୋଟି ଚାଲୁ ଚାଲୁ ବିତି ଯାଉ ଖରାବେଳ
ହା ହା, ଲା ଲା, ଲୁ ଲୁ, ଲା ଲା, ହା ହା, ହେ ହେ । ॥୦॥

ଏ ଜୀବନ ନୁହେଁ ଖାଲି ହସ କଉତୁକ
ଛୁରିଅନା ବୁକେ ସାଇତା ମଧୁ ମହକ
ମୋ' ପାଇଁ ତୁମେ ହୋଇପାର ମରୁଦ୍ୱୀପ
ତୁମ ପାଇଁ ମୁଁ ହୋଇପାରେ ଅନୁତାପ
ତଥାପି ଖେଳିବା ଜୀବନର ପଶାଖେଳ
ଆସ ଘେରାବାଲି.... ॥୧॥

ଖେଳୁ ଖେଳୁ ଯଦି ଅଜଗର ମୁଖେ ପଡ଼ି
ଅବା ଅଜାଣତେ ସରଗର ସିଢ଼ି ଚଢ଼ି
ଜୟ ପରାଜୟ ଲାଭ କ୍ଷତି ମାନେ ବୁଝି
ବୁଝାମଣା ପାଇଁ ତୁମେ ଯଦି ହୁଅ ରାଜି
ତେବେ ତ ଚାଲିବ ଜୀବନର ପଶାଖେଳ
ଆସ ଘେରାବାଲି.... ॥୨॥



## ରାଈ ମନ ବୃନ୍ଦାବନ

ଆଖି ତା ଯମୁନା ନଈ
ହୃଦୟ କଦମ୍ବ ବନେ ମଧୁର ବଇଁଶୀ ତାନେ
ଡ଼ାକେ କିଏ ରାଈ ! ରାଈ !.... । ॥୦॥

ଲୁହ ତା ଯମୁନା ପାଣି
କାହିଁକି ବହେ ଉଜାଣି
ଶ୍ୟାମ ପ୍ରେମ ତରଂଗିଣୀ
ସେ ଯେ କୃଷ୍ଣ ବିଯୋଗିନୀ
ପ୍ରଣୟିନୀ ଗାଈ.... । ॥୧॥

ଆରାଧିକା ସେ ରାଧିକା
କୃଷ୍ଣ ପ୍ରେମ ଆରାଧିକା
ଶ୍ୟାମ ବଂଧୁ ପଦେ ବିକା
ସେ ଯେ ଶ୍ୟାମ ପ୍ରେମେ ବାଈ । ॥୨॥



*ନି ସା ଗାମା ପାନି ସାରେ ଗା....*

ଗା.....ଗା....ତୁ ପିକ ଗା....

ବକୁଳର ଗଂଧେ ମଳୟର ଛନ୍ଦେ

ମନ୍ଦେ ମନ୍ଦେ ତୁହି ଗା... । ||୦||

କିଆଁ ଏ ଡ଼ାଳେ ସେ ଡ଼ାଳେ ଉଡ଼ି ବୁଲି

ମିଛେ କୁହୁ କୁହୁ ତାନ କରୁ ଖାଲି

କିବା ତୁହି ଖୋଜୁ ତୋର

ସପନର ଭଂଗା ନୀଡ଼

ନିସାନି ସାନିସା...ନିଧାନି...ଧାନିସା

ଅବା ଖୋଜୁ ତୋର ସାଥି କହି ଯା

ନିସା ଗାମା ପାନିସାରେ ଗା.... । ||୧||

ଏଠି ଶୂନ୍ୟ ପଡ଼ିଛି ମୋର ନୀଡ଼

ମତେ ଡ଼ର ଲାଗେ ଅମାନିଆ ଝଡ଼

ରିକ୍ତ ମୋ ତରୁ ଶାଖା

ବସିଛି ମୁଁ ଏକା ଏକା

ନିସାନି ସାନିସା....ନିଧାନି....ଧାନିସା

ବାରେ, ହେବୁ କି ମୋ ସାଥି କହି ଯା

ନିସାଗାମା ପାନିସାରେ ଗା.... । ||୨||



## ଦେଉଳ ଛାତିରୁ ପଥର ଖସିଲେ

ଦେଉଳ ଛାତିରୁ ପଥର ଖସିଲେ
ପଡ଼ଇ ଦେଉଳ ବେଢ଼ାରେ
ମୋ ମନ ଫୁଲର ସୁବାସ ଝରିଲେ
ମହକେ ମୋ ପ୍ରିୟା ଯୁଡ଼ାରେ । ||୦||

ମୁଁ ଯେ ବାରବୁଲା ଅଝଟ ଚଗଲା
ଅମାନିଆ ବନପକ୍ଷୀ
ସତ ପୀରତିର ଅଭୁଲା କାହାଣୀ
ମୋ ଜୀବନେ ଦେଲ ଲେଖି
ତୁମ ଆଖିଲୁହ ବରଷା ଝରିଲେ
ମିଶିଛି ମୋ ଲୁହ ଧାରାରେ । ||୧||

ଏ ମନ ନଈର ସେ ପାରିରେ ଯେବେ
ଫୁଟଇ କେତକୀ କିଆ
ଏ କୂଳ ସେ କୂଳ ମହକାଇ ଦେଇ
ହୁଅଇ ଆକୁଳ କିଆଁ
ବାଟ ଭୁଲି ଏବେ ଏ ମନ ତଟିନୀ
ହଜେ ତୁମ ପ୍ରୀତି ଧାରାରେ । ||୨||



## ମଳୟ ହୋଇ ଆସିବ ବୋଲି

ଆଗରୁ କଥା ଥିଲା
ପ୍ରଳୟ ହୋଇ ମୋ ମନ କୁଂଜେ
ଆସିଲ କାହିଁ ଭଲା । ||୦||

ବୟସ ଡ଼ାଳେ ପଲ୍ଲବି ଥିଲା
ପ୍ରୀତିର କିଶଳୟ
କୁହୁରେ ଭରି ଝେରା ଚଇତି
ପାଶୋରି ଥିଲା ଲୟ
ରୂପସୀ କେଉଁ କୃଷ୍ଣଚୂଡ଼ା
(କୁହ) ସପନେ ଭୁଲାଇଲା । ||୧||

ଛିନ୍ନ କରି ବଂଧନ ମୋର
ଶୂନ୍ୟ କରି ନୀଡ଼ (ଘର)
ଭିନ୍ନ କେଉଁ ପୃଥିବୀ ବୁକେ
ରଚିଲ ଅଭିସାର
ଫାଲ୍‌ଗୁନ ର କୁହେଳିରେ (କୁହୁଡ଼ିରେ)
ହେଲ କି ବାଟ ଭୁଲା ? ||୨||



*ପ୍ରୀତିର ଲତିକା ଆଗୋ*

ପୁଷ୍ପିତା ତୁମେ ରାଣୀ
ମୁଁ ଯେ, ପବନର ସୁରେ ସୁରେ
ଡ଼ାକେ ତୁମ ମନ ଜାଣି । ॥୦॥

ପୁଷ୍ପିତା ତୁମେ ଅପରାଜିତା ଗୋ
ରୂପ ରେ ତୁମେ ତ ଅପରିମିତା ଗୋ
ଫୁଟି ମହକଇ
ବାସ ଚହଟଇ
କେଉଁ ଗହନର କୋଳରେ ଲତିକା
ପାରେନା ମୁହିଁ ତ ଜାଣି । ॥୧॥

ଫୁଲ ଫଗୁଣର ଦୋଳି ଝୁଲି ଝୁଲି
ବନ ଲତିକାରେ ଆସନ୍ତି ମୁଁ ଚାଲି
ଋତୁ ରାଇଜରୁ
ପ୍ରୀତି ଗନ୍ତାଘରୁ
ମଣି ମୁକୁତାର ଯୁଆର ଛୁଟାଇ
ନିଅନ୍ତି ତୁମକୁ କିଣି । ॥୨॥



*ତୁମେ ନୀଳ ଆକାଶର ଚନ୍ଦ୍ରମା*

ମୁଁ ଯେ ଅସାର ମାଟିର ଧୂଳି
ତୁମ ଅଂଗରେ କେତେ ରୂପ
ମୁଁ ତ କେବେ ଗୋ ପାରିନି କଳି । ॥୦॥

ହେଲେ ବି ତୁମରି ରୂପରେ ମୁଁ ରୂପାୟିତ
ଜୀବନର ଅଧାଦିନ
ଆନ ଅଧା ତୁମ ଚାନ୍ଦିନୀ ଝୁରି ଝୁରି
ଅବସନ୍ନ ତନୁମନ
ମୁଁ ଯେ, ତୁମ ଯୋଚ୍ଛନାରେ ମରେ ଜଳି । ॥୧॥

କେଉଁ ଅଂକରେ ଗଣିବି ଗୋ କୁହ
ରୂପର ଲହରି ତୁମ
କେଉଁ ଏକକରେ ମାପିବି ଗୋ କୁହ
ମନର ଦୂରତା ଆମ
ମତେ, ନିଅ ବାରେ କୋଳେ ତୋଳି । ॥୨॥



*ତା ଦୁଇ ଆଖିର ଇସାରାରେ ଯଦି*

ଆହାତ ମୋ ମନପକ୍ଷୀ

ମୁଁ ତ ଜାଣେନା, କେଉଁ ତୁଳିରେ

ତାର ଛବି ମୁଁ ଯିବି ଲେଖି। ॥୦॥

ମୋ ମନର ଭସା ମେଘେ

ପ୍ରୀତିର ବିଜୁଳି ଲିପି

ଗୋପନେ ଗୋପନେ ଲେଖି

ମନତଳେ ଯାଏ ଛପି

ପବନରେ ଲୁଚି ଲୁଚି

ସେତ ଚୁପି ଚୁପି ଦିଏ ଡ଼ାକି। ॥୧॥

ସେ ଆଖିର ଝଲକରେ

ଜହ୍ନ ଉଠେ ଚମକି

ସେ ଆଖିର ଇସାରାରେ

ପାଦ ମୋ ଯାଏ ଅଟକି

ସେତ କହେ ଥିରି ଥିରି

ହାୟ, କିଛି ହିସାବ ରହିଛି ବାକି। ॥୨।



## ମଧୁଛନ୍ଦା ଆଗୋ...

ମଧୁଛନ୍ଦା ତୁମ ଛନ୍ଦର ମଧୁରତା
ମୋ ଜୀବନେ ଦେଲ ଭରି
ମଧୁଗଂଧା ତୁମ ସୁରଭିର ମାଦକତା
ଅଳିରେ ଦେଇଛି ଘାରି
ମହକେ ପାଗଳ କରି । ॥୦॥

ଅଳି ତ ପାରେନା ବୁଝି
କେଉଁ ସୁରଭିରେ ମନ ତାର ଗଲା ହଜି
ଅଳିକ ଅଳିର ଜୀବନ ମାଟିରେ
ବରଷା ଆସିଲା ଝରି
ତୁମେ, ସବୁଜିମା ଦେଲ ଭରି । ॥୧॥

ଅଳିତ ପାରେନା କହି
କେଉଁ ଛନ୍ଦରେ ଛନ୍ଦିଲ ତୁମେ
ଏ ଅଜଣା ମନ ଦୁଇ
ଝରା ପତରର ନିଥର ମନଟା
ନିମିଷେ ଉଠିଲା ଥରି
ତୁମେ, ମର୍ମର ଦେଲ ଭରି । ॥୨॥



# ପ୍ରେମ ନୁହେଁ ପ୍ରେମିକାର ମଥାର ସିନ୍ଦୁର

ଆଖିର କଜ୍ଜଳ ଅବା ପାଦର ନୂପୁର । ||୦||

ମିଳନରେ ନାହିଁ ପ୍ରେମ ନାହିଁ ବିରହରେ
ପ୍ରଣୟର ନିଶିଶେଷ ନିବିଡ଼ ପ୍ରହରେ
ପ୍ରେମ ପରା ମଧୁମତୀ ଅଧରେ ଅଧରେ
ମଧୁର ନିର୍ଝର । ||୧||

ସେ ନୁହେଁ ପାହାଡ଼ି ନଈ ଛାତିର ପୁଲକ
ବୟସର ବନାନୀରେ ଫୁଲର ମହକ
ପ୍ରେମପରା ପ୍ରଣୟୀର ଛାତିର ରୁଧିର
(ଆଉ) ମନର ଅନ୍ଧାର । ||୨||



## ସଜଫୁଲ

### (ପ୍ରିୟା-୧)

*ଏମିତି ପ୍ରିୟା ମିଳିବ କାହିଁ କୁହ*

ଚନ୍ଦ୍ରକଳା ପୀରତି ଯାର
ଅଭିମାନ ଯା ପାଣିର ଗାର
(ଆଉ) ହୃଦୟେ ଭରା ସ୍ନେହ । ॥୦॥

ମିଳନେ ଯାର ଯୋଛନା ପଡ଼େ ଝରି
ସପନେ ଭରା ପାହାନ୍ତି ତାରା
ଲାଜରେ ଯାଏ ଜଳି
ଗୁଣୁଗୁଣୁ ତା ଗୀତର ସୁରେ
ଭରିଛି କେତେ ମୋହ । ॥୧॥

ରକ୍ଷିଲେ ବାରେ ଥରଇ ରସାତଳ
ତା ନୀରବତା ଜଳାଏ ଚିତା
ଲାଗେନା କିଛି ଭଲ
କଥାକୁହା ସେ ଆଖିରେ ତାର
ସାଜେନା ଯମା ଲୁହ । ॥୨॥

ମନଟା କାହିଁ ଖେଳଇ ଲୁଚକାଳି
ଅନେକ ଦିନୁ ମନୋଇ ପ୍ରିୟା
ଦେଇନି ପଦେ ଗାଳି
ମୋ ପ୍ରିୟା ମୋର ଯେତେ ଆପଣା
(ମୋର) ପରାଣ ସେତେ ନୁହଁ ।



## ସଜଫୁଲ

(ପ୍ରିୟା-୨)

### ମାଗିଲେ ମିଳେନା ମନ

ମାଗିଲେ ମିଳେନା ପ୍ରୀତି
ମାଗିଲେ ମିଳେନା ଜହ୍ନ
ମାଗିଲେ ମିଳେନା ସାଥି
ପ୍ରୀତିର ମନଟା ନୁହେଁ
ତାରାଭରା ଜହ୍ନରାତି । ||୦||

ପ୍ରେମିକ ମନଟା ସାଗରୁ ଗଭୀର
ଆକାଶୁ ଉଦାର
ବୀଚିଠୁଁ ଅଧୀର ହୋଇ
ମୁଗ୍ଧ ମଧୁପ ସପନ ବିଭୋର
କଅଁଳ କଳିର ସ୍ନିଗ୍ଧ ପରଶ ପାଇଁ
ଉଆଁସୀ ରାତିର ଆକାଶେ ଖୋଜେ ସେ
ପିଆସୀ ତାରାର ପ୍ରୀତି । ||୧||

ସଂଦେହୀ ମନ ସଂଦେହ କରେ
ପ୍ରେମକି ଲୁଚଇ କାନି ପଣତର ତଳେ
ଯୋଛନା କି କେବେ ଲୁଚଇ ଆକାଶେ
ଜହ୍ନ ଲୁଚିଲେ ବଉଦର ଆଡୁଆଳେ
ପ୍ରୀତି ଲାଜ ଆଉ ଜହ୍ନ ଯୋଛନା
ଅପାଶୋରା ଦୁଇ ସାଥି । ||୨||



## ସଜଫୁଲ

### (ପ୍ରିୟା-୩)

ନାୟକ: ମନ ନୁହେଁ ସପନର ଝିଲିମିଲି ଖେଳଣା

ଦବ ତାକୁ ହଜେଇ

ନାୟିକା: ମନ ନୁହେଁ ମୀନାକରା ତାରକସୀ ଗହଣା

ନବ ତାକୁ ଘେରାଇ

ନାୟକ: ମନ ଦେଇ ମନକଥା ରଖନା ଲୁଚେଇ । ।।୦।।

ନାୟକ: ଦିନ ଥିଲା ପଦଟିଏ ନ କହିଲେ କଥା ଗୋ

ଦୁଇମନ ଗହନରେ ଜଳୁଥିଲା ଚିତା ଗୋ

ଆଜି ସେଇ ମନ ଅଛି, ତୁମେ ଅଛ ମୁଁ ଅଛି

ସେ ମନର କାଗଜଟା ଦିଅନା ଜଳାଇ

ମନ ଦେଇ ମନକଥା ରଖନା ଲୁଚେଇ । ।।୧।।

ନାୟିକା: ମନ ନୁହେଁ ତୁଟା ଫୁଟା କଂସା ଅବା ପିତଳ

ସୁନାର ଗହଣା ଅବା ମୋ ପାଦର ନୂପୁର

ଭାଂଗିଗଲେ ଗଢ଼ିଦବ

ଗଢ଼ି ପୁଣି ଭାଂଗିଦବ

କିବା ଥରେ ବଂଧା ଦେଇ ନବ ମୁକୁଳାଇ

ଯୁଗଳ: ମନ ଦେଇ ମନକଥା ରଖନା ଲୁଚେଇ । ।।୨



## ଏଇ ଆମ ଜୀବନର ଡ଼ାଇରି

କିଛି ମିଛ କିଛି ସତ, କିଛି ଗପ କିଛି ଗୀତ
କିଛି ମିତ ଆଉ କିଛି ବଇରି । ॥୦॥

ମିଛ ନଥିଲେ ତ ବନ୍ଧୁ ସତର ବି ମାନେ କିଛି ହୁଏନା
ଖାଦ ନ ମିଶିଲେ କେବେ ଗଢ଼ି ହୁଏ ସୁନା ରୁପା ଗହଣା ?
ଅଂଧାର ଆଲୁଅ ଦୁଇ
ସୁଖ ଦୁଃଖ ଖରା ଛାଇ
ଜୀବନେ ତ ଚିର ନୁହେଁ କାହାରି । ॥୧॥

ନିଦାଘର ବଇଶାଖୀ ଆଣେ ଡ଼ାକି ବରଷାର ଅସରା
ମଉସୁମୀ ତାଳେ ତାଳେ ଗୀତ ଗାଇ ଧରା ହୁଏ ଅଧୀରା
ବିରହ ମିଳନ ଦୁଇ
ଜୀବନର ରଂଗ ହୋଇ
କେହି ନୁହେଁ ଚିରଦିନ କାହାରି । ॥୨॥



ଏଇ ସେ ସାଗର ବେଳା
ଯହିଁ, ଊର୍ମି ପିଟଇ ମଥା
ସାମୁକା କହୁଚି ଜୀବନ କାହାଣୀ
ବୁକୁ ତଳେ ଛପି ବ୍ୟଥା
କେତେ, ସୁନ୍ଦର ସେ ନୀରବତା ! । ॥୦॥

ନଦୀ ତା ପାଦରେ ଲହୁର ଅଳତା ଭରି
ଧାଇଁଛି ଆଗକୁ ତ୍ରସ୍ତ ହରିଣୀ ପରି
ହଜାଇ ନିଜକୁ ସାଗର ଢେଉରେ
ସୁଖରେ ସେ ଯିବ ମରି
କେତେ ସୁନ୍ଦର ମିଳନ ତା । ॥୧॥

ପ୍ରୀତି ତ ଜୀଇଁଛି ସ୍ମୃତିକୁ ବୁକୁରେ ଭରି
ଜୀବନ ଧାଇଁଛି ମରଣର ହାତ ଧରି
ପ୍ରୀତି ପାଖୁଡ଼ାରେ ଲେଖା ଗୀତି ଯେତେ
କହେ ଅଶ୍ରୁର ଗାଥା
କେତେ, ମଧୁର ସେ ଆତୁରତା ! । ॥୨॥



## ରଜନୀ ବିଭୋର ଚନ୍ଦ୍ରମା

ଦିବସେ ବିଭୋର ରବି

ପ୍ରୀତିରେ ବିଭୋର ଭ୍ରମର

ଗୀତିରେ ବିଭୋର କବି । ||୦||

ରଜନୀ ବୁଝେନା ତା ଆକାଶେ କିଏ

ଯୋଛନା ଦେଇଛି ଢ଼ାଳି

ଦିବସ ବୁଝେନା ପଦ୍ମବଧୂରେ

ରଂଗ କେ ଦେଲା ବୋଳି

ନିତି ହୁଏ ଦିନ ନିତି ହୁଏ ରାତି

ଲୁଚକାଳି ଖେଳ ଚଲେ ଦିନରାତି

ନିତି ଜାଗେ ନୂଆ ଛବି । ||୧||

ପୀରତିର କିଛି ରଂଗ ତ ନଥାଏ

ବୟସ ତାହାର ସାଥି

ଆକାଶର ନାନା ରଂଗ ପରାଏ

ବଦଳେ ସେ ଦିନରାତି

ଅଳିତ ବୁଝଇ କଳିର ଇଂଗିତ

କଳି ବି ଶୁଣଇ ଅଳିର ସଂଗୀତ

ଦରଦ ବୁଝଇ କବି । ||୨||



## ଗୋପରୁ ମଥୁରା ଯେତିକି ନିକଟ

ମଥୁରାରୁ ଗୋପ ସେତିକି ଦୂର
ମୁଁ ତୁମ ପାଇଁ ଯେତିକି ଆପଣା
ତୁମେ ତ ହୋଇଛ ସେତିକି ପର । ॥୦॥

କାହ୍ନୁ ଚାଲିଗଲା ମଥୁରା
ରାଧା ତ ବିରହ ଆତୁରା
ରାଇ ଆଖି ଲୁହ ଅସରା
ଭରିଛି ତା ଆଖି ପସରା
ଫେରିବା ବାଟ କି କାହ୍ନୁ ଭୁଲିଗଲା
ରଥ ବାହି ନେଲା ବୁଢ଼ା ଅକ୍ରୁର । ॥୧॥

ଲେଉଟାଣି ବାଟ ସରେନା
ଦିଆମନ କେବେ ଫେରେନା
ଉଜାଣି ଯମୁନା ବହେନା
ରାଇ ତ ଉଛୁର ସହେନା
ହୃଦୟରୁ ମନ ଯେତିକି ନିକଟ
ମନରୁ ହୃଦୟ ସେତିକି ଦୂର । ॥୨॥



## ମନା ତ କରିନି ସାଥିରେ ଯିବାକୁ

ଏକା ତୁମ ହାତ ଧରି
ପର ଭାବିଥିଲେ କିଏ ବା ଆସନ୍ତା
ନିଜ ଘରୁ ଗୋଡ଼କାଢ଼ି । ॥୦॥
ମିଳନ ବେଳାର ଗୋଲାପ ନୁହେଁ ମୁଁ
ତୁମ ବିଦାୟର ଲୁହ
ମୋ ପ୍ରେମେ ଗାଧୋଇ ଯେତେ ଡୋରା ତୁମେ
ସେତିକି କଳା ମୋ ଦେହ
ଅସଜଡ଼ା ମୁଁ ଯେ ଦୁନିଆ ଆଖିରେ
ତୁମକୁ ଆପଣା କରି । ॥୧॥
ପ୍ରେମ ବୋଲି ଆମେ ଯେତେ ବି କହିଲେ
ଦୁନିଆ ତ ବୁଝେ ନାହିଁ
ତଥାପି ମୁଁ ଆଜି ନିଦରେ ଚାଲୁଛି
ସପନ ଦୁହାଇ ଦେଇ
ବାଟେ ଘାଟେ କେତେ ଟାପରା ଶୁଣୁଚି
ପାଟିର କବାଟ କିଳି । ॥୨॥
ଲୁହର ତ କିଛି ରଂଗ ନଥାଏ
ସୁଆଦ ଚାଖିଚି ଯିଏ
ଆକାଶର ରଂଗ ମନର ତୁଳିରେ
ଲୁହକୁ ଆଂକିଚି ସିଏ
ଅଂଧ ଦେଶରେ କିଏ ବା ବଂଚିଛି
ଦରପଣ ବିକି କରି । ॥୩॥



## *କାହିଁକି ଆସିଲ କୁହ ଏତେ ଦିନ ପରେ*

ଲେଖିବାକୁ ପ୍ରୀତି କାବ୍ୟ

ଝରା ପତରରେ । ॥୦॥

ରହିଁଥିଲା ଏଇମନ କଅଁଳ ପରସ

ରହିଁ ରହିଁ ବିତିଲାଣି କେତେ ଯେ ବରଷ

ମନର ପରଦା ଚିରି

ସ୍ମୃତି ସବୁ ଗଲେ ଫେରି

ତା ପରେ ତୋଳିଲ ସୁର ଛିନ୍ନ ବୀଣାରେ । ॥୧॥

ରାତିଶେଷ ଦୀପ ପରି ଥରେ ପ୍ରୀତି ଶିଖା

କୁହ ଗୋ କେମିତି ଏହି କାବ୍ୟ ହେବ ଲେଖା

ପ୍ରୀତିର ତଇଳ ଢ଼ାଳି

ଜଳାଅ ଗୋ ସେ ଦୀପାଳି

ନିଜ ହାତେ ସେଇ ଗୀତ ଲେଖି ଦିଅ ବାରେ । ॥୨॥



(ଆବର୍ତ୍ତନ)

ମୃତ୍ୟୁ ତୁମେ....

ଜୀବନ ସେପାରେ ଆତ୍ମାର ଆହୂତି ସ୍ୱାହା
ବିଦଗ୍ଧ ପରାଣେ ହେ ମହାନ ତୁମେ
ଶାନ୍ତିର ପଦେ 'ଆହା'। ॥୦॥

ମୃତ୍ୟୁ ତୁମେ....

ଗୋଧୂଳି ଲଗନେ ଜୀବନର ଶେଷ ରାହା
ମାଟି ପ୍ରଦୀପର ଶେଷ ନମସ୍କାର
ନିଷ୍ପ୍ରଭ ଶେଷ ଦୀପଶିଖା। ॥୧॥

ମୃତ୍ୟୁ ତୁମେ....

ବରଷା ପାଣିରେ କାଗଜ ତିଆରି ନାଆ
ଭାସି ଭାସି ଯାଅ ସମୟ ନଈରେ
ଭେଟିବାକୁ ଜୀବନ ଦରିଆ। ॥୨॥

ମୃତ୍ୟୁ ତୁମେ....

ଆଲୋକ ସମାନ ସତ୍ୟ ତୁମରି କାୟା
ଜନ୍ମ ମରଣ ସୂତ୍ରରେ ଗୁଂଥା
ସତ୍ୟ-ଶିବ-ସୁନ୍ଦର ମାୟା
(ସତ୍ୟ ସେ ଜୀବନର ମାୟା।) ॥୩॥



## (ଅବୁଝା ବସନ୍ତ)

### ହେ ବସନ୍ତ ତୁମେ ଆସ

କୋଇଲି ର କୁହୁରେ

ମଳୟର ବାହୁରେ

ମିଳନରେ ମହୁରେ । ॥୦॥

ତୁମେ ପରା ଆସ ମିତ

ଫଗୁଣର ଫୁଲରେ

ଭ୍ରମର ର ଗୁଂଜନେ ଆକାଶର ଅଂଗନେ

ନବ କିଶଳୟ ଭରି ସଂଗୀତ ଲହୁରେ । ॥୧॥

ତୁମେ ତ ହୁଅନା ବୁଝି

ଅବୁଝା ବସନ୍ତ

ତୁମକୁ ପାରେନା ସହି

ହେ ପରାଣ ମିତ

ଅଝଟ ସେ ମାୟାଜାଲେ ହଜିଯାଏ ମୋର ଚିତ୍ତ

ହଳଦି ବସନ୍ତ ଓଠ ମିଠା ମିଠା ପିହୁରେ । ॥୨॥



## ପ୍ରେମକୁ କେବେ ତ ପାପ ମୁଁ ଭାବିନି

ତେଣୁ ମୁଁ ପାଇଛି ଭଲ
ସବୁ ସପନକୁ ମିଛ ଯେ ଭାବିଛି
ସିଏ କରେ ମୁଲଚଲ । ॥୦॥

ସବୁ ଫୁଲେ ଯଦି ମହକ ଥା'ନ୍ତା
ପାଗଳ କିଆଁ ଭଅଁର
ସବୁ ଲୋକ ଯଦି ପ୍ରେମକୁ ବୁଝନ୍ତେ
ସରଗ ହୁଅନ୍ତା ଘର
ଶଂଖା ସିନ୍ଦୁରର ବେପାରି ବୁଝେ କି
ସିନ୍ଦୁର ଟିକକ ମୂଲ ? ॥୧॥

ବିଧାତା....ବିଧାତା....ବିଧାତା....
ହାୟରେ ବିଧାତା କେଉଁ ମାଟି ନେଇ
ଗଢ଼ିଲୁ ମଣିଷ ଜାତି
ଭରିରେ ତଉଲେ ସୁନା ରୁପା ସେତ
ଭାରରେ ତଉଲେ ପ୍ରୀତି
ମନକୁ ଧରିବା ପାଇଁ ସେ ପାତିଛି
ସପନର ମାୟାଜାଲ । ॥୨॥



## *ଆଗୋ ପ୍ରିୟା ତୁମେ କୁହ....*

କପାଳେ କୁଂକୁମ ଟୋପା
ପାଦରେ ରଂଗ ଅଳତା
        ଦେଇନି ବୋଲିକି କୁହ
ଅଁଧରେ ପୁଲକ ଦେଇ
        ସତେକି ମୁଁ ପାରିବିନି
            ଲିଭାଇ ଆଖିର ଲୁହ । ॥୦॥

ରୂପସୀ ରାତିର ମଳୟ ବାହୁରେ
        ତୁମେ ଗୋ ରଜନୀଗଂଧା
ନିଥର ମରୁର ବାଲୁକା ବୁକୁରେ
        ତୁମେ ଗୋ ଅଳକାନନ୍ଦା
ଆଖି ଲୁହେ ଭରା ଉଛୁଳା ନଈରେ (ତୁମ)
        ହୃଦୟ ନିଗିଡ଼ା ସ୍ନେହ । ॥୧॥

ଦୂର ଆକାଶର ନୀଳିମା ସେପାରେ
        ତୁମେ ମୋର ଟିକି ତାରା
ହସର ଲୁହର ଜୀବନେ ଆମର
ସାଥି ଆମ ପ୍ରୀତି ପରା
ପ୍ରୀତିକୁ ପାଥେୟ କରି ଆମ ପଥ (ଚଲାପଥ)
        ହୋଇପାରେ ମଧୁମୟ । ॥୨॥



ପ୍ରିୟା....ଆଗୋ ପ୍ରିୟା....

ବନକୁ ପୋଡ଼ିବା ପାଇଁ
ଲୋଡ଼ା ଯଦି କିଛି ନିଆଁ
ମନକୁ ଜାଳିବା ପାଇଁ
ଗୋଟିଏ ମନୋଇ ପ୍ରିୟା । ॥୦॥

ତୁମେ ତ ରଚିଛ ସପନ ସେପାରେ
ବାଇଆ ପକ୍ଷୀର ନୀଡ଼
ବୁଝାଇ ପାରେନା, ନିଜର ଛାଇକୁ
ତୁମେ ତ ହେଉଛ ଆଡ଼
ତୁମେ ମୋ ମନର ଚନ୍ଦନ ବନରେ
ମୃଦୁ ମଳୟର ବାଆ । ॥୧॥

ଦୂର ଦିଗନ୍ତର ଅଗନା ଅଗନି
ବନେ ମୁଁ କରିଛି ଘର
ମନ ଗହନର କୋଣରେ ଅଗନି
ଜଳିଲେ ଲାଗଇ ଡ଼ର
ଅବୁଝା ପ୍ରିୟାକୁ କେମିତି କହିବି
ବୁଝାଇ ହୁଏନା ଯାହା । ॥୨॥

ଆଶା ନିରାଶାର ଢେଉରେ ପହଁରି
ତୁମେ ତ ପାଅନା କୂଳ
ମନୋଇ ପ୍ରିୟାକୁ ବୁଝାଇବା ପାଇଁ
ମତେ ବି ହୁଏନା ବେଳ
ତୁମେ କି ଜାଣନା ତୁମରି ନଈରେ
ମୁଁ ଯେ ଏକ ଟିକି ନାଆ । ॥୩॥



## କହିବ କି କିଛି କହିବ କି

ନଦୀ ହୋଇ ଦିନେ ନ ବହିଲେ ନାହିଁ
ଲୁହ ହୋଇ ବାରେ ବହିବ କି ? ||୦||

ତୁମକୁ ବୁଝିବା ପାଇଁ
ଶୂନ୍ୟତା ସାଥେ ନୀରବତା ମିଶି
ଲୁହ ହୋଇ ଗଲା ବହି
ଏ ମନର ସେଇ ଶୂନ୍ୟତାକୁ
ଅଶ୍ରୁ ନିଗାଡ଼ି ଧୋଇବ କି ? ||୧||

ତୁମକୁ ଛୁଇଁବି ବୋଲି
ତୁମ ମମତାର ଇନ୍ଦ୍ରଧନୁର
ସାତରଂଗ ବୋଲି ହେଲି
ସେଇ ମମତାର ପୂର୍ବ ଦିଶାର
କିଛି ରଂଗ ମାଖି ହୋଇବ କି ? ||୨||

ତୁମକୁ ପାଇବି ଭାବି
ତରୁଛାୟା ବୋଲି ମରୁ ପଥିକ ମୁଁ
ମରିଚିକା ପାରେ ଲଭି
ସେଇ ମରୁପଥେ ସାଥି ହୋଇ ଦିନେ
ମନକଥା ପଦେ କହିବ କି ? ||୩||



(ଜୀବନ)

## ଏଇ ଜୀବନ....

ଜୀବନଟା କିଛି ସ୍ମୃତିର ଆଲୋକ ଧାରା
ପ୍ରତିଟି ସକାଳ ନୂଆ ଅନୁଭୂତି ଭରା । ||୦||

ସେ ନୁହେଁ ଅନ୍ଧାରୀ ଏକୁଟିଶାଳର କୁଆଁ
ପ୍ରଥମ ଫଗୁଣେ କଅଁଳ ବାସନ୍ତୀ ଛୁଆଁ
ନିଦାଘ ଉଜୁଡ଼ା କାଳ ବଇଶାଖୀ ବାଆ
ଅନ୍ତିମ ଯୁଇର ବତାସ କୁହୁଳା ଧୂଆଁ
ଜନମ ମରଣ ପାହାଚ ପାହଚ
କାହାଣୀର ଛାଇ ଖରା । ||୧||

ଅଲକତ ଦୁଇ ପାଦର ଅଳତା ଦାଗ
ଅବୁଝା ପ୍ରିୟାର ଦରବୁଝା ଅନୁରାଗ
ରୂପସୀ ରାତିରେ ପାହାନ୍ତି ଜହ୍ନର ବିଭା
ସୁନା ସକାଳର ତରୁଣ ଅରୁଣ ଆଭା
ବେଙ୍ଗର ପୃଥିବୀ ନିମିଷକେ ଆନ
କେହି ନୁହେଁ ଧ୍ରୁବତାରା । ||୨||

ଶୁଦ୍ଧ ମାନସେ ଚେତନାର ପ୍ରତିବାଦ
ବିଦ୍ଧ ପକ୍ଷୀର କରୁଣ ଆର୍ତ୍ତନାଦ
ଲୁବ୍ଧକ ସେଇ ବ୍ୟାଧର ଶାଣିତ ଶର
କ୍ରୌଞ୍ଚ ବିହଙ୍ଗ ଆଖିର ଲୋତକଧାର
ଏଇତ ଜୀବନ କ୍ଷଣ ଅନୁକ୍ଷଣ
ଅଶ୍ରୁ ପୁଲକରେ ଭରା । ||୩||





ଡ଼. ଅନ୍ତର୍ଯ୍ୟାମୀ ମିଶ୍ର, ଜନ୍ମ: ତା.୨.୦୫.୧୯୪୬, ଗ୍ରାମ ବଡ଼ତିହଡ଼ା, ଜି: ଜଗତ୍‌ସିଂହପୁର। ୧୯୬୪ ମସିହାରୁ ଆକାଶବାଣୀ, କଟକ କେନ୍ଦ୍ରର ସ୍ୱୀକୃତିପ୍ରାପ୍ତ ଗୀତିକାର ଭାବେ ଆକାଶବାଣୀ, ଦୂରଦର୍ଶନ, ମଂଚ ତଥା ଚଳଚ୍ଚିତ୍ରରେ ଗୀତ ଏବଂ ୨୦ରୁ ଉର୍ଦ୍ଧ୍ୱ ଗୀତାଭିନୟ ରଚନା କରି ଉତ୍କଳର ଜନମାନସରେ ପ୍ରତିଷ୍ଠିତ ଓ ଲୋକପ୍ରିୟ ଗୀତିକବି, ଆଜି ମଧ୍ୟ ଗୀତିକବିତା ରଚନାରେ ବ୍ରତୀ ଏବଂ 'ଓଡ଼ିଆ ଗୀତିକବି ସମାଜ' ର ସଭାପତି ରୂପେ ଅଧିଷ୍ଠିତ।

